ଦିନନାଥ ପାଠୀ

# ଦିନେ ନ ଡାକିବୁ ଧରମା ବୋଲି



ଦିବ୍ୟ ମୁଦ୍ରଣୀ
ଭୁବନେଶ୍ୱର



ଦିନନାଥ ପାଠୀ • ଦିନେ ନ ଡାକିବୁ ଧରମା ବୋଲି • ଉପନ୍ୟାସ • ୨୦୦୯
ପ୍ରଥମ ମୁଦ୍ରଣ • ସ୍ୱତ୍ୱ: ଲେଖକ • ପ୍ରଚ୍ଛଦ ରଚନା: ଡି.ଏନ୍.ରାଓ • ପ୍ରକାଶକ: ଦିବ୍ୟ ମୁଦ୍ରଣୀ • ସାମନ୍ତରାପୁର, ଭୁବନେଶ୍ୱର • ମୁଦ୍ରକ: ଦିବ୍ୟମୁଦ୍ରଣୀ,ସାମନ୍ତରାପୁର, ଭୁବନେଶ୍ୱର • ମୂଲ୍ୟ: ଟ.୬୦/- (ଷାଠିଏ ଟଙ୍କା ମାତ୍ର)

---

Dinanath Pathy • Dine Na Dakibu Dharama Boli • Fiction • 2009 First Edition • © Author • Jacket Painting: D.N. Rao • Publisher: Divya Mudrani • Samantarapur, Bhubaneswar • Printer : Divya Mudrani • Price: Rs.60.00 (Sixty Rupees only)

## ଦିନନାଥ ପାଠୀ

ଜଣେ ଚିତ୍ରକର, ଲେଖକ, କଳା ସମାଲୋଚକ ଓ କଳା ଐତିହାସିକ । ଡିଜାଇନର ଓ ଭିଜୁଏଲାଇଜର୍ ଭାବେ ବହୁ ଆନ୍ତର୍ଜାତୀୟ ତଥା ଜାତୀୟ କଳା ପ୍ରକଳ୍ପର ରଚୟିତା । ସଫଳ କଳା ସଂଗଠକ ଓ କଳା ପ୍ରଶାସକ । ଭୁବନେଶ୍ୱର ବି.କେ. ଚାରୁ ଓ କାରୁକଳା ମହାବିଦ୍ୟାଳୟର ପ୍ରତିଷ୍ଠାତା ଅଧ୍ୟକ୍ଷ ଓ କେନ୍ଦ୍ର ଲଳିତକଳା ଏକାଡେମୀର ପ୍ରାକ୍ତନ ସଚିବ । ଓଡ଼ିଶା କ୍ରାଫ୍ଟସ୍ କାଉନ୍‌ସିଲର୍ ଅଧ୍ୟକ୍ଷ ଓ ରାଜ୍ୟ ଲଳିତ କଳା ଏକାଡେମୀର ପୂର୍ବତନ ସଭାପତି । ଅଙ୍ଗରାଗ- ଦେବପ୍ରସାଦ ନୃତ୍ୟ ପ୍ରତିଷ୍ଠାନର ଚେୟାରମ୍ୟାନ୍ ଏବଂ ବାରାଣାସୀସ୍ଥ ଏଲିସ୍ ବୋନର୍ ଗବେଷଣା ସଂସ୍ଥାର ନିର୍ଦ୍ଦେଶକ । ଭାରତର ରାଷ୍ଟ୍ରପତିଙ୍କ ରଜତ ଫଳକ ଠାରୁ ଆରମ୍ଭ କରି ଓଡ଼ିଶା ସରକାରଙ୍କ ସୂର୍ଯ୍ୟ ସମ୍ମାନ ଯାଏଁ ବହୁ ଆନ୍ତର୍ଜାତୀୟ ତଥା ଜାତୀୟ ପୁରସ୍କାରରେ ସମ୍ମାନିତ । ଦେଶ ବିଦେଶରେ ତାଙ୍କ ଚିତ୍ର ପ୍ରଦର୍ଶନୀ ଆୟୋଜିତ ଓ ବହୁ ସଂଗ୍ରହାଳୟରେ ଚିତ୍ର ସ୍ଥାନିତ । ତିରିଶି ବର୍ଷ ଧରି ଜୁରିକ୍‌ର ରିଟ୍‌ବର୍ଗ ସଂଗ୍ରହାଳୟର ଅବୈତନିକ କ୍ୟୁରେଟର ଓ ବିଶ୍ୱବିଖ୍ୟାତ କଳା ଐତିହାସିକ ଡକ୍ଟର ଏବର୍‌ହାର୍ଡ ଫିସର୍‌ଙ୍କ ଗବେଷଣା ସହଯୋଗୀ । ଓଡ଼ିଶାର କଳାକୁ ବିଶ୍ୱସ୍ତରରେ ପରିଚିତ କରେଇବାରେ ଡକ୍ଟର ପାଠୀଙ୍କ ଭୂମିକା ଉଲ୍ଲେଖନୀୟ । ପଚାଶରୁ ଊର୍ଦ୍ଧ୍ୱ ଗ୍ରନ୍ଥର ରଚୟିତା । ପ୍ରକାଶିତ ଗ୍ରନ୍ଥ ମଧ୍ୟରୁ, Traditional Paintings of Orissa, Essence of Orissan Paintings, Mural Paintings in Orissa, Art: Regional Traditions, Rethinking Odissi, Let a Thousand Flowers Bloom (with Soubhagya Pathy), Amorous Delight and Murals for Goddesses and Gods (with Eberhard Fischer), The Painted Icons, ଦିଗପହଣ୍ଡିର ଡ୍ରଇଂମାଷ୍ଟ୍ରେ, ପୁଞ୍ଜିକର୍ଯାଁର ଫକୀର, ଚିଲିକା ପାଣିରେ ଛାଇ, ରୂପଜୀବୀର ଡାଏରୀ, ଭବଘୂରା ଭବନାଥ, ସୁନାମାଛ, ସାୟୋନାରା, ପୂନର୍ନବା, ଶ୍ଳୋକଛନ୍ଦ, ଗଙ୍ଗାବତରଣ ଓ ଗଛ କୋରଡ଼ରେ ହୃଦୟ ଏବଂ କବିତା ସଂକଳନ ଅବନ୍ତୀ ଓ ଚିତ୍ରଶାଳା ପ୍ରଭୃତି ତାଙ୍କର ସଫଳ କୃତି ।

## ସ୍ମୃତି ଅର୍ଘ୍ୟ

ଧନ୍ୟ ଆମର ଶିଳ୍ପ ଚାତୁରୀ !
ଧନ୍ୟ ଲଳିତ କଳା !
ରଜାର ସୁନାମ ପ୍ରଚାରର ଲାଗି
କୋଟି ବୁକେ ବାଜେ ଶଳା ।
ଅମର ହୋଇବ କାଳର କବଳେ
ଯେଣୁ, ଜଣକର ନାମ,
ଲକ୍ଷ ବେନାମି ଜୀବନରେ ତେଣୁ
ଗଢ଼ା ହେଲା ଶମଶାନ ।

ଏ ଭାବପ୍ରବଣ ଜାତି

ଏବେ ବି ଗରବେ ଚାହିଁ ତା କବରେ
ଫୁଲାଏ ଆପଣା ଛାତି ।

ମୋ ଜନ୍ମର ପାଞ୍ଚବର୍ଷ ଆଗରୁ 'ସହକାର' ଏବଂ ଜନ୍ମବର୍ଷରେ ବଙ୍ଗ ଭାଷାରେ 'ମନ୍ଦିରା'ରେ ପ୍ରକାଶିତ ବିଂଶ ଶତାବ୍ଦୀର ସର୍ବ ଶ୍ରେଷ୍ଠ ଆଧୁନିକ ଓଡ଼ିଆ କବି ସଚି ରାଉତରାୟଙ୍କ ଦ୍ୱାରା ରଚିତ 'କୋଣାର୍କ' କବିତାର କିୟଦଂଶ ।

-ଲେଖକ

# ଉପକ୍ରମଣିକା

## ଏକ

''ଧର୍ମପଦ ପୁରସ୍କାର ରାଜ୍ୟର ତଥା ଲଳିତକଳା ଏକାଡେମୀର ଓଡ଼ିଆ ଶିଳ୍ପୀଙ୍କ ପାଇଁ ଏକ ସର୍ବଶ୍ରେଷ୍ଠ ସମ୍ମାନ । ମାତ୍ର ଦୁଃଖର କଥା, ପଦ୍ମଶ୍ରୀ, ପଦ୍ମଭୂଷଣ, ପଦ୍ମବିଭୂଷଣ, ଭାରତରତ୍ନ ଇତ୍ୟାଦି ଆଳଙ୍କାରିକ ବିଶେଷଣ ଶବ୍ଦମାନଙ୍କ ଭଳି ଧର୍ମପଦ ଶିଳ୍ପୀମାନେ ସେମାନଙ୍କ ନାମ ସାଙ୍ଗରେ ଏ ପୁରସ୍କାର ସଂପର୍କିତ ପଦବୀ ବ୍ୟବହାର କରିପାରନ୍ତି ନାହିଁ । ଧର୍ମପଦ ଏକ ନାମବାଚକ ବିଶେଷ୍ୟ ପଦ ହୋଇଥିବାରୁ ପୁରସ୍କୃତ ଶିଳ୍ପୀ ତାଙ୍କ ନାମ ପୂର୍ବରୁ ଏହି ଉପାଧି ବିନିଯୋଗ କରିବା ସମ୍ଭବ ନୁହେଁ । ଏ କ୍ଷେତ୍ରରେ କେତେକ ଶିଳ୍ପୀ ନିଜର ମତ ଦେଇ କହିଥିଲେ ଯେ, ଧର୍ମପଦ ପୁରସ୍କାର ପାଇଥିବା ଓ ଆଗକୁ ପାଇବାକୁ ଥିବା ଶିଳ୍ପୀମାନେ ନିଜ ନିଜ ନାମ ପୂର୍ବରୁ ଯଦି ଶିଳ୍ପଗୌରବ, ଶିଳ୍ପରତ୍ନ, ଶିଳ୍ପୀଗୁରୁ ଇତ୍ୟାଦି ଭଳି କୌଣସି ଏକ ସମ୍ମାନଜନକ ବିଶେଷଣ ପଦକୁ ବିନିଯୋଗ କରିବା ପାଇଁ ଏକାଡେମୀ ଉଦ୍ୟମ କଲେ ଭଲ ହୁଅନ୍ତା ।''

ଉପରୋକ୍ତ ଜ୍ଞାନଗର୍ଭକ ଗଦ୍ୟାଂଶ ୨୦୦୭ ମସିହା ନଭେମ୍ବର ଷୋହଳ ତାରିଖରେ ଅନୁଷ୍ଠିତ ଓଡ଼ିଶା ଲଳିତକଳା ଏକାଡେମୀ ସାଧାରଣ ପରିଷଦର ବିବରଣୀ । ଉପାଧି ମଣ୍ଡିତ ହେବା ପାଇଁ କି ବ୍ୟାକୁଳ ଆମର ଆତ୍ମଅଭିମାନୀ ଓ ଜ୍ଞାନୀ ଓଡ଼ିଆ ଶିଳ୍ପୀମାନେ ।  ମନ୍ଦିର ଚୂଡ଼ାରୁ ଡେଇଁ ଆତ୍ମହତ୍ୟା କରିବା ପାଇଁ ଧର୍ମପଦକୁ ବାଧ କଲାପରେ ସେମାନେ ତା'ର ପ୍ରେତକୁ ଶିରୋପା ଭଳି ମୁଣ୍ଡରେ ମୁଣ୍ଡେଇ, ତାକୁ ପୁଣି ଗୌରବ ଜ୍ଞାନ କରି ସମାଜରେ ବିଶିଷ୍ଟ ଶିଳ୍ପୀଭାବେ ପ୍ରତିଷ୍ଠା ଲାଭ କରିବା ପାଇଁ କି ବ୍ୟଗ୍ରତା, କି ଆକୁତି । ନତଜାନୁ ହୋଇ ଭିକ୍ଷା ମାଗିବାର କି କୁତ୍ସିତ ପ୍ରବୃତ୍ତି । ଧନ୍ୟରେ କୋଣାର୍କ ଦେଶର ଶିଳ୍ପୀ ।

ଏହି ସାଧାରଣ ପରିଷଦର ବିବରଣୀ ସଂପର୍କରେ ଆଉ କିଛି ଅଧିକା ଅବତାରଣା କଲେ, ଘୃଣ୍ୟ ମାନସିକତାର ଆସ୍ଫାଳନରେ ହୁଏତ କାନ ବଧିରା ପଡିଯିବ ।

(କ) ନିଜ ରାଜ୍ୟର ଜଣେ ଶିଳ୍ପୀଙ୍କୁ ତାଙ୍କ ଜୀବନର ଦୀର୍ଘ ସାଧନା, ଉତ୍କୃଷ୍ଟ ସୃଜନୀ ଶୈଳୀ, ଖ୍ୟାତି, ଯଶଃ ଏବଂ ସର୍ବୋପରି ବରିଷ୍ଠତାକୁ ଆଧାର କରି

ରାଜ୍ୟ ସରକାର ଏକାଡେମୀର କାର୍ଯ୍ୟକାରୀ ସମିତି ସଭ୍ୟ ଓ ସାଧାରଣ ପରିଷଦ ସଭ୍ୟଭାବେ କାର୍ଯ୍ୟ କରିବା ପାଇଁ ନିଯୁକ୍ତି କରିଥାଚି । ଅପର ପକ୍ଷରେ ଏହି ଶ୍ରେଣୀର ସଦସ୍ୟମାନଙ୍କ ମଧ୍ୟରୁ ହୁଏତ କେହି କେହି ଧର୍ମପଦ ପୁରସ୍କାର କିମ୍ବା ଶିଳ୍ପୀ ସମ୍ବର୍ଦ୍ଧନା ପାଇଁ ରାଜ୍ୟର ପୁରସ୍କୃତ ଶିଳ୍ପୀମାନଙ୍କ ଦ୍ୱାରା ସର୍ବାଧିକ ମତ (ଭୋଟ) ପାଇ ଯୋଗ୍ୟ ବିବେଚିତ ହୋଇପାରନ୍ତି, ଏହି ପରିସ୍ଥିତିରେ ପ୍ରଶ୍ନ ଉଠେ ଯେ, ଏକାଡେମୀର କାର୍ଯ୍ୟକାରୀ ସମିତି ବା ସାଧାରଣ ପରିଷଦର ଉପରୋକ୍ତ ଯୋଗ୍ୟତା ଥିବା ଜଣେ ଶିଳ୍ପୀଙ୍କୁ ସଂଖ୍ୟାଧିକ ମତଦ୍ୱାରା ଯଦି ଧର୍ମପଦ ପୁରସ୍କାର କିମ୍ବା ଶିଳ୍ପୀ ସମ୍ବର୍ଦ୍ଧନା ପାଇଁ ମନୋନୀତ କରାଯାଏ, ତେବେ ସେ କାହିଁକି ପୁରସ୍କାର ପାଇବାରୁ ବଂଚିତ ହେବେ ।''

କେତେ ନିଷ୍ପାପର ଏ ଯୁକ୍ତି । ଜଣେ ଚୋର ଚୋରି କରିସାରିଲା ପରେ ବିବେକର ଦଂଶନରେ ହଠାତ୍ ଭାବୁଛି, ସେ ପରଦ୍ରବ୍ୟ ଅପହରଣ କରି ଘୋର ଅନ୍ୟାୟ କରିଛି । ଅପର ବ୍ୟକ୍ତିର ସଂପତ୍ତିରେ ତା'ର ବା କି ଅଧିକାର ଅଛି ? କିନ୍ତୁ ପରମୁହୂର୍ତ୍ତରେ ନିଜ ସପକ୍ଷରେ ଯୁକ୍ତି ଯୋଗାଡ଼ କରି ନିଜକୁ ପ୍ରବୋଧନା ଦେବାଛଳରେ କହୁଛି ଭଗବାନ ତ ସମସ୍ତଙ୍କ ଠାରେ ଏକାଭଳି ବିରାଜିଛନ୍ତି । ଆମର ବାହ୍ୟରୂପ ସିନା ଭିନ୍ନ ଭିନ୍ନ କିନ୍ତୁ ଆମେ ସମସ୍ତେ ଏକ, ଆତ୍ମା-ପୁରୁଷ । ଏଣୁ ଚୋରି କ୍ଷେତ୍ରରେ ନିଜ ପର ଚିନ୍ତା ହିଁ ଅମୂଳକ । ମୁଁ ଯାହା ଚୋରି କରିଛି ତାହା ବି ମୋର ସଂପତ୍ତି । ପୁରସ୍କାର ତ ସାଧାରଣ କଥା ।

(ଖ) କେତେକ ସଦସ୍ୟ ପ୍ରଶ୍ନ କରିଥିଲେ ଯେ ଏହିଭଳି କ୍ଷେତ୍ରରେ ଏକାଡେମୀର କୌଣସି ସଦସ୍ୟ ଯଦି ଧର୍ମପଦ ସମ୍ମାନ ବା ଶ୍ରେଷ୍ଠଶିଳ୍ପୀ ସମ୍ମାନ ପାଇବା ପାଇଁ ସର୍ବାଧିକ ମତଦ୍ୱାରା ବିବେଚିତ ହୋଇଥାନ୍ତି, ତେବେ ସଂପୃକ୍ତ ଶିଳ୍ପୀଜଣକ ସଦସ୍ୟ ପଦରୁ ଇସ୍ତଫା ଦେବା ଆବଶ୍ୟକ, ଏହା ଆଇନଗତ ପ୍ରଶ୍ନ ନହେଲେ ବି ନିଜର ତଥା ଏକାଡେମୀର ନିର୍ମଳ ଭାବମୂର୍ତ୍ତି ଦୃଷ୍ଟିରୁ ଏପରି (ନାଟକ) କରିବା ଆବଶ୍ୟକ ।''

ପୂଜା ଥାଳିରେ କଦଳୀର ସଂଖ୍ୟା କମି ଯାଇଥିବାର ଲକ୍ଷ୍ୟ କରି ପୂଜାରୀ ସନ୍ଦେହ କରି ପଚାରିଦେଲେ, ମନ୍ଦିରରେ କିଏରେ ? ଚୋର ମନ୍ଦିର ଗର୍ଭଗୃହ ଭିତରୁ ଉତ୍ତର ଦେଲା 'ମୁଁ କଦଳୀ ଖାଇନି' ।

(ଗ) ଅପର ପକ୍ଷରେ ଆଉ କେତେକ ସଭ୍ୟ ପ୍ରଶ୍ନ କରିଥିଲେ ଯେ, ସରକାର ଜଣେ ଉପରୋକ୍ତ ଯୋଗ୍ୟତାଥିବା ବ୍ୟକ୍ତିକୁ ଯଦି ଏକାଡେମୀର ସଦସ୍ୟ ଭାବେ ନିଯୁକ୍ତି କରିଥାନ୍ତି, ତେବେ ଏ ପ୍ରକାର ଇସ୍ତଫା ପତ୍ରଦ୍ୱାରା (ନୀତିଗତ

ଭାବେ ବାଧ୍ୟ କରାଇ) ପୁରସ୍କାରରୁ ବଂଚିତ ହେବା ପାଇଁ ସରକାର କ'ଣ ପରୋକ୍ଷରେ ଇଙ୍ଗିତ କରିଛନ୍ତି କି ?'

ଗୋଟିଏ ବିରାଡି ଧରାପଡିଯିବା ଭୟରେ ଆଖିବୁଜି କ୍ଷୀର ପିଉଥିଲା । ଯାହାର କ୍ଷୀର ପିଉଥିଲା ସେ ଖୁବ୍ ଉତ୍ୟକ୍ତ ହେଇ ବିରାଡିକୁ ପଚାରିଲା, ବଦ୍‌ମାସ୍, ତୁ ମୋ କ୍ଷୀର କାହିଁକି ପିଇଲୁ । ବିରାଡି ଅତି ଚଲାକ, ଚତୁର ହେଇ ଉତ୍ତର ଦେଲା । କହିଲା ମୁଁ ତ ଆଖିବୁଜିଛି । ତୁ କ'ଣ ମୋତେ ଦେଖି ପାରିଲୁ ?

(ଘ) ଯଦି କୌଣସି ଉପରୋକ୍ତ ଯୋଗ୍ୟତା ଥିବା ଶିଳ୍ପୀ ଲଳିତ କଳା ଏକାଡେମୀର ସଦସ୍ୟଭାବେ ନିଯୁକ୍ତି ପାଇଥାନ୍ତି ଏବଂ ଅପରପକ୍ଷରେ ଧର୍ମପଦ ପୁରସ୍କାର ପାଇଁ ଯୋଗ୍ୟ ବିବେଚିତ ଏହି ଶିଳ୍ପୀଜଣଙ୍କ ଏକାଡେମୀର କର୍ମକର୍ତ୍ତାଙ୍କ ବିନା ସଂପୃକ୍ତିରେ (ଅର୍ଥ, ବାହୁବଳ ଇତ୍ୟାଦି ବିନା) ଶହ ଶହ ପୁରସ୍କୃତ ଶିଳ୍ପୀଙ୍କ (ଗାଏ ମୋଟ ଶହେ ନବେ) ବହୁମତ ପାଇ ଯଦି ଏହି ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ହେଉଥାନ୍ତି, ତେବେ ଏ ପ୍ରକାର ଇସ୍ତଫାପତ୍ର ଭାରତର ଗଣତାନ୍ତ୍ରିକ ପରମ୍ପରାକୁ ଉଲଙ୍ଘନ କରୁନାହିଁକି ?

ପାଠକେ ଜାଣି ଖୁସୀ ହେବେ ଯେ ଧର୍ମପଦ ପୁରସ୍କାର ପ୍ରାପ୍ତି ଆସନ୍ନ ନ ହେଲେ ଜଣେ ଓଡ଼ିଆ ଶିଳ୍ପୀ ରାଜ୍ୟ ଲଳିତକଳା ଏକାଡେମୀର ସାଧାରଣ ପରିଷଦରେ ସଭ୍ୟ ହେବାର ଯୋଗ୍ୟତା ହାସଲ କରନ୍ତିନି । ଏବଂ ଧର୍ମପଦର ପ୍ରେତମାନେ ହିଁ ଏଭଳି ହାସ୍ୟାସ୍ପଦ, ସ୍ୱାର୍ଥୀବିଜଡ଼ିତ ଓ ନିମ୍ନମାନର କଥାମାନ ଚିନ୍ତା କରିଥାନ୍ତି । ଉପରୋକ୍ତ କ,ଖ,ଗ,ଘରେ ସନ୍ନିବେଶିତ ଟିପ୍ପଣୀଗୁଡିକ କୌଣସି ପାଗଲଖାନାର ବିକୃତ ମସ୍ତିଷ୍କ ମଣିଷମାନଙ୍କ ମଧ୍ୟରେ ଘଟିଥିବା କଥୋପକଥନର ଅସଂଲଗ୍ନ ଅଂଶବିଶେଷ ଭଳି ମନେହେବ ।

ଏଭଳି ଏକ ଅସମ୍ମାନଜନକ ଭୂମିକାକୁ ନେଇ କ'ଣ ଗୋଟିଏ ସୃଜନ ସାହିତ୍ୟର ପୁନାଦି ପକେଇ ହେବ ? ଅବଶ୍ୟ କ୍ଷୋଭ ଓ ବିଷାଦରୁ ହିଁ ବିଶ୍ୱ ସାହିତ୍ୟର ସୃଷ୍ଟି ।

ହାୟରେ ଧର୍ମପଦର ପ୍ରେତ । ତୋର କି ଅଦ୍ଭୁତ ସମ୍ମୋହନ ଶକ୍ତି । ହିତାହିତ ଜ୍ଞାନକୁ ଜଳାଞ୍ଜଳି ଦେଇ କାମୁକ ପୁରୁଷଙ୍କ ଭଳି ଦଳେ ଶିଥିଳ ଚର୍ମା ଶିଳ୍ପୀ ବ୍ୟାଧର କପଟ ଜାଲ ପାରି ଦିଅନ୍ତି ଆଉ ଉତ୍‌କଣ୍ଠିତ ହେଇ କାନ ପାରି ରହିଥାନ୍ତି କେଉଁଠୁ ପାଚିଲା ଆତ ଭଳି ପୁରସ୍କାରଟିଏ ସେମାନଙ୍କ ଇଲାକାରେ ସତେ ଅବା ଖସି ପଡିବ ।

## ଦୁଇ

କାପୁରୁଷ ପର ମରିବା ଜଗତେ
ନୁହେଁ ନର-ପଉରୁଷ ।
ପରହିତ ସାଧି ମରେ ଯେ ମହୀରେ
ସେହି ଏକା ସୁପୁରୁଷ ।
ମାନବ-ଜୀବନ ନୁହଇ କେବଳ
ବର୍ଷମାସ ଦିନ ଦଣ୍ଡ,
କର୍ମେ ଜୀଏଁ ନର, କର୍ମ ଏକା ତାର
ଜୀବନର ମାନଦଣ୍ଡ ।
ମୁହୂର୍ତ୍ତେ ମାତର ଉଜ୍ଜ୍ୱଳ ପ୍ରଖର
ଶିଖା ଟେକି ହୁତାଶନ
ଜଳି ଯେବେ କରେ ଆଲୋକ ଉତ୍ତାପ
ଚଉଦିଗେ ବିତରଣ ।
ଲିଭୁ ସେ କ୍ଷଣକେ ତଥାପି ଏ ଲୋକେ
ରହେ ତା' ଆଦର ଯଶ;
କି ଲୋଡ଼ା ତହିଁରେ ରହେ ଯେ ମହୀରେ
କୁହୁଳି ସହସ୍ର ବର୍ଷ ।

\+ \+ \+ \+

ବାରଣ ବଢ଼େଇ ରକତ ରଞ୍ଜିତ
ଯଶ ସନମାନ ଧନ,
ପାଇ ରାଜଦ୍ୱାରେ କହ କି ପ୍ରକାରେ
ବଢ଼ିବ ମୋ ବଡ଼ପଣ ?

\+ \+ \+ \+

ତେଜ ମୋ ମମତା ଦେଖାଅ ବୀରତା
କର ନାହିଁ ଜାତି ଦ୍ରୋହ ।
କହ ମନ ସୁଖେ, ନାହିଁ ପୁଏ ଦାୟେ
ବାରଣ ବଢ଼ାଇ ଦାୟ',
ଜଗତେ ଏକଥା ରହୁ କାଳେ କାଳେ

ଦେଉଛି ଏବେ ବିଦାୟ ।

ଗୋପବନ୍ଧୁଙ୍କ ଧର୍ମପଦ କାବ୍ୟପଙ୍‌କ୍ତି ମଧ୍ୟରେ କାଳଜୟୀ ଚିନ୍ତାର କେତୋଟି ପଦ ସୃଜନ-ସତ୍ୟର ଉଦ୍‌ଘୋଷଣା କରେ । ବର୍ଷ ମାସ ଦିନ ଦଣ୍ଡରେ ଗଣା ହେଉଥିବା ସ୍ଥାଣୁ ସ୍ଥବିର ଜୀବନ, କର୍ମର ମାନଦଣ୍ଡରେ ମପା ଜୀବନ, ମୁହୂର୍ତ୍ତକର ହୁତାଶନ ଶିଖା ଭଳି ଜୀବନ, ପୁଣି ସହସ୍ର ବର୍ଷର କୁହୁଁଳା ଜୀବନର ଦର୍ଶନ ଭିତରର ଶ୍ରେୟ ଶିଳ୍ପୀ ଧର୍ମପଦର ହୁତାଶନ ପ୍ରତିଭାକୁ ସମର୍ଥନ କେବଳ ଦିଏନି ଆଜିର ଲଳିତକଳାର ଧର୍ମପଦମାନଙ୍କ ଆଖି ଖୋଲିଦିଏ ।

'ଧର୍ମପଦ' କାବ୍ୟ ଗୋପବନ୍ଧୁ ଦାସଙ୍କ କବି ହେବା ଆଶାର ଅଙ୍କୁର ନୁହେଁ, ଏହା ଏକ ବିକ୍ଷିପ୍ତ ହୃଦୟର ସାମୟିକ ସ୍ପନ୍ଦନ ମାତ୍ର । ବନ୍ଦୀଶାଳାର ନିର୍ଜନ ପ୍ରକୋଷ୍ଠରେ ଏକ ସନ୍ଧ୍ୟାରୁ ତହିଁ ଆରଦିନ ସକାଳ ପର୍ଯ୍ୟନ୍ତ ଏକାକୀ ଆବଦ୍ଧ ହୋଇ ଅନେକ ସମୟରେ ଉନ୍ନିଦ୍ରାବସ୍ଥାରେ ଯେ ସବୁ ଚିନ୍ତା ମନକୁ ଆସୁଥିଲା, 'ଧର୍ମପଦ' ତହିଁର ଅନ୍ୟତମ ।'

କବି ଗୋପବନ୍ଧୁ ଆଶାକରନ୍ତି ଯେ ତାଙ୍କ ନିର୍ଜନ ବନ୍ଦୀର ନିଭୃତ ବିକ୍ଷିପ୍ତ ପ୍ରାଣର ସ୍ପନ୍ଦନରେ ସହାନୁଭୂତି ଦେଖାଇ 'ଧର୍ମପଦ' ପଢ଼ିବା ଦ୍ୱାରା ଉତ୍କଳବାସୀ ନିଜ ଜାତୀୟ ଗୌରବରେ କ୍ଷଣକ ଲାଗି ଅନୁପ୍ରାଣିତ ହେଲେ, ସେ ପରମ ପ୍ରୀତ ଓ ଆହ୍ଲାଦ ଲାଭ କରିବେ ।

ଗୋପବନ୍ଧୁଙ୍କ ଧର୍ମପଦ ଓ ରବି ସିଂହଙ୍କ 'ଲାଲ ପାଗୋଡ଼ାର ପ୍ରେତ' ମଧ୍ୟରେ ମୌଳିକ ଚିନ୍ତା କ୍ଷେତ୍ରରେ ଏକ ଆକାଶ ଛୁଆଁ ବିବର୍ତ୍ତନ । ଶୈଳ୍ପିକ ଅବବୋଧ, ଅନ୍ତର୍ଦୃଷ୍ଟି ଓ ସତ୍ୟନିଷ୍ଠ ପ୍ରକାଶର ଅନନ୍ୟତା ଓ ଓଜସ୍ୱିନତା ରବି ସିଂହଙ୍କ କବିତାର ଉପଜୀବ୍ୟ । ଗୋପବନ୍ଧୁଙ୍କ 'ଧର୍ମପଦ' ତ୍ୟାଗର ଏକ ତଥାକଥିତ ମହନୀୟ ଉଦାହରଣ ହେଲେ ରବି ସିଂହଙ୍କ ଧର୍ମପଦ ଈର୍ଷିତ ଓ ପୀଡିତ ସୃଜନ ଉପରେ ଏକ ଅବହେଳିତ ପ୍ରତିଭା, ମୃତ୍ୟୁ ଓ ଧ୍ୱଂସ ଯାହାର ଭବିତବ୍ୟ । ରବି ସିଂହ କହନ୍ତି 'ସତ୍ୟର ସନ୍ଧାନ କରିବା ମୋର କାମ ନୁହେଁ - ସତ୍ୟ ସୃଷ୍ଟି ହିଁ ମୋର ଧର୍ମ । ଏଇ ଆତ୍ମବିଶ୍ୱାସ ଏଠି ମୋତେ ନିର୍ଦ୍ଦେଶ ଦେଉଛି ଏକ ଜ୍ୱଳନ୍ତ ସତ୍ୟ (ଯଦିଓ ତାହା ଅପ୍ରିୟ) ସୃଷ୍ଟି କରିବା ପାଇଁ । ମୁଁ ଜାଣେ ମୋର ଏଇ ସୃଷ୍ଟିରେ ମ୍ରିୟମାଣ ହେବେ, ସେହିମାନେ ଯେଉଁମାନେ ଏ ଆବର୍ଜନାପୂର୍ଣ୍ଣ ସମାଜ ବ୍ୟବସ୍ଥାର 'ଦୁର୍ନୀତିର ସ୍ଥାନୀୟ ପଣ୍ଡା-ପୁରୋଧା (Local high-priests of corruptions) ସୃଜନୀଶକ୍ତି ଯେଉଁମାନଙ୍କର ସଂପୂର୍ଣ୍ଣ ଭାବରେ ନିଃଶେଷିତ, 'ପ୍ରେରଣା ଦାନ'ର ଭଣ୍ଡାମି ତଳେ ପ୍ରତିଟି ଉଦ୍‌ଗତ ପ୍ରତିଭାଙ୍କୁରର ଗଳାଚିପି ହତ୍ୟା କରିବା ଯେଉଁମାନଙ୍କର ଶ୍ରେଣୀଗତ ଧର୍ମ, ମାନବତାର ଆଇନ-କାନୁନ୍‌ରେ ଅବାଞ୍ଛିତ ଯେଉଁମାନଙ୍କର ଅସ୍ତିତ୍ୱ- ସେହିମାନେ ।''

''ସହକର୍ମୀ ବାରଶହ ବଢ଼େଇ ଭାଇଙ୍କ ସଙ୍ଗଠିତ-ଚାପରେ, କୋଣାର୍କର ନିର୍ମାଣ କାଳରେ ଧର୍ମପଦ ପରି ଅମର ଶିଳ୍ପୀପୁତ୍ର ପ୍ରତି ଯେପରି ଘୋର ଅବିଚାର କରି ବସିଥିଲା ବିଶୁ ମହାରଣା

(ରାଶି ରାଶି ମିଥ୍ୟାର ସଂଗଠିତ-ଚାପରେ 'ସତ୍ୟ' ପ୍ରତି ଆଜି ସେହିପରି ଚାଲିଛି ଅବିଚାର ଓ ଆକ୍ରମଣ । ଏହି ମିଥ୍ୟା-ନିର୍ଦ୍ଦେଶିତ ଅବିଚାର ଏବଂ ଆକ୍ରମଣ ଆପାତତଃ ଯଦିଓ ଆଜି ଶକ୍ତିଶାଳୀ, ଜନ ଓ ସମାଜ-ଜୀବନକୁ ଯଦିଓ ଆଜି ନିୟନ୍ତ୍ରିତ କରୁଛି, ଏହାର ଘୃଣ୍ୟ ପାଶବ ଶକ୍ତି, ଏହି ଶକ୍ତିର ଦାରୁଣ ନିଷ୍ପେଷଣରେ 'ସତ୍ୟ'ଟା ଯଦିଓ ଆଜି ପୀଡ଼ିତ, କ୍ଷୀଣକଣ୍ଠ ମୃତବତ୍; ତଥାପି ଧର୍ମପଦର ମୃତ୍ୟୁ ଯେପରି କୋଣାର୍କର ମୃତ୍ୟୁ ନୁହେଁ ସୃଷ୍ଟି; ବର୍ତ୍ତମାନର ମୃତବତ୍ ପୀଡ଼ିତ -ସତ୍ୟ ସେହିପରି ମିଥ୍ୟାର ପାଶବ ଶକ୍ତିର ନିର୍ଲ୍ଲଜ ଅସ୍ତିତ୍ୱ ପ୍ରତି ନିଶ୍ଚିନ୍ତତା ମଧ୍ୟ ନୁହେଁ ।), ତା'ରି କା-ପୁରୁଷତା, ତା'ରି ବାରଶହ ଶିଳ୍ପୀ ସାଥୀଙ୍କ ଜଘନ୍ୟ ଶିଳ୍ପଈର୍ଷା ପ୍ରତି ଆଜିର ଦଣ୍ଡାୟମାନ କୋଣାର୍କର ଭଗ୍ନ ମୁଖଶାଳା ମୃତ ଧର୍ମପଦର ସତେ ଯେପରି ଏକ ପ୍ରେତାୟିତ-ଅଟ୍ଟହାସ (ଆଜିର ପୀଡ଼ିତ ମୁମୂର୍ଷୁ-ସତ୍ୟ ମିଥ୍ୟାର ଘୃଣ୍ୟ ପାଶବ ଶକ୍ତି ପ୍ରତି ସେହିପରି ଏକ ପ୍ରଚଣ୍ଡତମ ବିଦ୍ରୂପ, ସର୍ବନାଶର ଏକ ଅନାଗତ ଭ୍ରୂକୁଟି) ।

ଅତ୍ୟନ୍ତ ଅବିଚାରିତ ଭାବେ ଅତ୍ୟାଚାରିତ ଧର୍ମପଦର ସ୍ୱଚ୍ଛ ଜୀବନର ଝଲକ ସଂପର୍କରେ ଏବଂ ସେହି କ୍ଷୋଭରୁ ଉଦ୍‌ଗୀରଣ ଅସୁମାରୀ ଦାବାନଳ ଦ୍ୱାରା ଦଗ୍ଧୀଭୂତ ସ୍ଥାଣୁ, ସ୍ଥବିର ଶିଳ୍ପୀକୁଳର ବୃଥା ଆସ୍ଫାଳନକୁ ନେଇ ମୋର ବକ୍ତବ୍ୟ କବି ରବି ସିଂହଙ୍କ ମାର୍ମିକ ଉଚ୍ଚାରଣରେ ଯଥାର୍ଥଭାବେ ପ୍ରତିଫଳିତ ।

ଦେଖ ! ଦଣ୍ଡାୟମାନ କୋଣାରକ
କ୍ଷୟମୁଖୀ ମୁଖଶାଳା,
ଏଇ, ତା'ର ଯେତେ
ଭୂ-ପତିତ ସବୁ ଶିଳା,
ଯଦିଓ ଏମାନେ
ମୂକ ଓ ମୌନ
ନାହିଁ ମୁଖେ କିଛି କଥା,
କିନ୍ତୁ ଏମାନେ
ମୃତ-ଧରମାର
ସ୍ତବ୍ଧ-ଲୋହିତ-ଚିତା ।
ଏ ଶିଳା-ଖଣ୍ଡ
ମୃତ-ସକାଳର ଲିପି,
ଜାତି ଭାଲପଟେ
ଘନ-କଳଙ୍କ
ଅଲିଭା-ପାଣ୍ଡୁଲିପି ।

\+ \+ \+

ହେ ମୋର ଦେଶର
ମହା ମହା କବି,
ଆହେ କୋଣାରକ-
ଗର୍ବର ଗୋବୀ,
କେତେଦିନ ଆଉ
ନାଚିବୁ ବନ୍ଧୁ,
କବି-କଳାକାର-
ସ୍ରଷ୍ଟା- ମରଣାନନ୍ଦେ ?

+ + +

ପୂର୍ବାଶା- କୂଳେ ମୁଁ ଆଜି କରୁଛି
ରକ୍ତର ପ୍ରଣିପାତ,
ମୋର ଚିନ୍ତାର ପୃଷ୍ଠ-ଭୂମିରେ
ବୁଲୁଛି ଭ୍ରମିରେ,
ଚିରେ ସବାର୍ ଲାଲ୍-ପାଗୋଡ଼ାର ପ୍ରେତ ।

ମହତ୍ ଚିନ୍ତା ଓ ଅଭିଳଷିତ କାର୍ଯ୍ୟ ଅବାଞ୍ଛିତ ବ୍ୟକ୍ତିମାନଙ୍କ ଦ୍ୱାରା ଅଯଥା ବ୍ୟାହତ ହେଲେ ସାଧାରଣତଃ ଗଂଜାମିଆଁଟିଏ ଅକଥ୍ୟ, ଅଶ୍ରାବ୍ୟ ଦୋ' ଅକ୍ଷରୀ ଭାଷାରେ ମା, ବାପା ଠାରୁ ଆରମ୍ଭ କରି ସପ୍ତପୁରୁଷ ଉଦ୍ଧାର କରିବାର ବହୁ ନଜିର ବିଦ୍ୟମାନ ଥିବା ସତ୍ତ୍ୱେ, ସମସ୍ତ କ୍ଷୋଭ ଓ ଆକ୍ରୋଶକୁ ଶୃଙ୍ଖଳିତ କରି ସାହିତ୍ୟର ବିମଳ ବେଦୀ ଉପରେ ଯେତେ କ୍ଷୁଦ୍ର ଓ କ୍ଷଣିକ ହେଉପଛେ ମୋ ଭାବନାର କୋଣାର୍କଟିଏ ଗଢ଼ିବାର ମୁଁ ପ୍ରୟାସ କରିଛି । ଏହାକୁ ପ୍ରାୟଶ୍ଚିତ ବି କୁହାଯାଇପାରେ । କିନ୍ତୁ ଏ ଦେଉଳର ମୁଣ୍ଡି ମାରିବା ପାଇଁ ମୁଁ ଧର୍ମପଦଟିଏ ଖୋଜୁଛି । ଅପାଙ୍କ୍ତେୟ, ଅପଗଣ୍ଡ, ସ୍ଥବିର ଦଳେ ଶିଳ୍ପୀଙ୍କ ସ୍ୱାର୍ଥରକ୍ଷା ପାଇଁ ମୁଁ ଧର୍ମପଦ ସାଜି ଦେଉଳ ଚୂଡ଼ାରୁ ଡେଇଁ ଆତ୍ମହତ୍ୟା କରିବା ପାଇଁ ଚାହୁଁନି । ଥାଉ ସେ ଜାତିପ୍ରେମ, ଥାଉ କୁଳମାନରକ୍ଷା, ଥାଉ ସ୍ୱାର୍ଥତ୍ୟାଗର ଅମଳିନ କାବ୍ୟଗାଥା, ଧର୍ମପଦମାନେ ଅନ୍ତତଃ ନିଜ ନିଜ ସଂପର୍କରେ, ନିଜର ସୃଜନୀ ପ୍ରତିଭାକୁ ନେଇ ଏବେ ସଚେତନ ହୁଅନ୍ତୁ । ଶିଶୁ ହତ୍ୟା ଓ ପ୍ରଚଣ୍ଡ ପ୍ରତିଭାର ହତ୍ୟା କରି ମହାପାପର ଉଦ୍‌ଘୋଷଣା କରିବା କ'ଣ ଓଡ଼ିଆ ପରମ୍ପରା ? ମୁଁ ସେଭଳି ପରମ୍ପରାର ସଂରକ୍ଷକ ନୁହେଁ । ଶିଳ୍ପ ପରମ୍ପରା ବୋଲି ଏବେ ଯେଉଁ ଚିତ୍କାର ଉଠୁଛି, 'ତାହା ବାର ଜାତି ତେର ଗୋଳା, ବୈଷ୍ଣବ ହେଲେ ସବୁ ଗଲା' ନ୍ୟାୟରେ ଗଠିତ ଧୋବା, ତେଲି, ଗୁଡିଆ, ଚମାର, ପାଣ, କଣ୍ଡରାଙ୍କ ସୁବିଧାବାଦର ଦଳ । ମୁଁ ଜାତିଭେଦ ଭଳି ଘୃଣ୍ୟ କଥା କହି କାହାକୁ ବ୍ୟକ୍ତିବିଶେଷ ଭାବରେ ନ୍ୟୁନ କରିବା ପାଇଁ ଚାହେଁନି । ଅବଶ୍ୟ ମୁଁ ଜାତିକଥାକୁ ଆୟୁଧ କରିବା ପାଇଁ କୁଣ୍ଠା ପ୍ରକାଶ କରୁଥିଲେ କ'ଣ ହେବ, ଏବେ ତ ସମଗ୍ର ଭାରତ

ବର୍ଷ ଜାତିଆଣର ହଳାହଳରେ ଜର୍ଜରିତ । ''ଲୁଚିଛି ନା ଗୋଡ଼ ଦି'ଟା ଦିଶୁଛି ।'' ଏଣୁ ରବି ସିଂହଙ୍କ ଭାଷାରେ ବରଂ ଦମ୍ଭେ କହିବି: ହାୟ ନିର୍ଲଜ ଜାତି, ହାୟ, ବିଷହୀନ-ବିଷଧରକୁଳ, ତଥାପି ଛାଡିନ ଜାତି । ?

## ତିନି

'ଧର୍ମପଦ'ର କିମ୍ବଦନ୍ତୀକୁ ମିଛରେ ପୁଟଦେଇ ଏକ ହତ୍ୟାଘଟଣାକୁ ଆତ୍ମତ୍ୟାଗର ଅମ୍ଳାନ ନିଦର୍ଶନ ବୋଲି କହି ଓଡ଼ିଆ ସାହିତ୍ୟରେ ଯେଭଳି ଭାବରେ ଗୁରୁତ୍ୱ ଦିଆଯାଇଛି ମନେହୁଏ ତାହା ଓଡ଼ିଆ ଜାତିର, ପୁଣି ଶିଳ୍ପୀକୁଳର ଘୃଣ୍ୟ, ଲଜ୍ଜାହୀନ ଓ ଅମାନୁଷିକ କଥାବସ୍ତୁ । କଳ୍ପନାରେ ସୁଦ୍ଧା ଏଭଳି ଏକ ଅଭାବନୀୟ ଘଟଣାର ଅନୁରଣନ ନିଶ୍ଚୟ ଦୋଷାବହ । କୋଣାର୍କକୁ ନେଇ ଗଢ଼ିଉଠିଥିବା କିମ୍ବଦନ୍ତୀଗୁଡ଼ିକ ମଧ୍ୟରୁ ଧରମା କାହାଣୀଟି ଅତ୍ୟନ୍ତ ସ୍ପର୍ଶକାତର ଏବଂ ଗୋଟିଏ ଜାତି ତଥା ଗୋଷ୍ଠୀ ଉପହସିତ ହେଲାଭଳି ପ୍ରସଙ୍ଗ । ବାରଣ' ବଢ଼େଇରେ ଦାୟ ନା ପୁଅରେ ଦାୟ ପ୍ରସଙ୍ଗଟିକୁ ପାଠ୍ୟ ପୁସ୍ତକରେ ସ୍ଥାନିତକରି କୋମଳମତି ବାଳକ ବାଳିକାଙ୍କୁ କି ନୀତିଶିକ୍ଷା ଦିଆଯାଉଛି କେଜାଣି ?

ଶିବେଇ ସାଆନ୍ତରା ଥାଳି ମଝିରୁ ହାଉଫୁଟା ଗରମ କ୍ଷୀରୀଖାଇ ହାତପୋଟକା କରିବା, ଆଉ କ୍ଷୀରୀ ବାଢ଼ିଦେଇଥିବା ମାଉସୀ କ୍ଷୀରୀଖିଆକୁ ଉପଲକ୍ଷ୍ୟ କରି ମନ୍ଦିର ନିର୍ମାଣ ସଂପର୍କରେ ମୌଳିକ କୌଶଳଟିଏ ବତେଇ ଦେବା ଆମ ଶିଳ୍ପପରମ୍ପରାର ଚେର କେତେ ଗହୀର ତାହା ସୂଚେଇ ଦିଏ । ମାଉସୀ ବୋଧହୁଏ ଶିଳ୍ପୀକୁଳର ପ୍ରୌଢ଼ାନାରୀଟିଏ ଯାହାଙ୍କ ସ୍ୱାମୀ ମନ୍ଦିର ବିନ୍ଧାଣି ଥିଲେ । ଓଡ଼ିଆ ଶିଳ୍ପପରମ୍ପରା ଓ ତହିଁରେ ନାରୀମାନଙ୍କର ଭୂମିକାକୁ ନେଇ ଟିକିଏ ଅଧିକ ଗୁରୁତ୍ୱଦେଇ ଆଲୋଚନା କଲେ ଜଣାପଡିବ ଯେ ଓଡ଼ିଆଣୀମାନେ ସ୍ୱାମୀମାନଙ୍କୁ ଦରିଆପାରି ବଣିଜ କରିବା ପାଇଁ ନିର୍ଭୟରେ ବୋଇତରେ ପଠେଇଦେଇ ସେମାନଙ୍କ ଫେରିବା ବାଟକୁ ଧୈର୍ଯ୍ୟର ସହିତ ଅପେକ୍ଷା କରୁଥିଲେ । ଚିତ୍ରିତ ମଙ୍ଗଳାପଟି ବା ତ'ପୋଇ ପଟି ଏ ପରମ୍ପରାର ସ୍ୱାକ୍ଷର ବହନ କରେ । ବେପାରବଣିଜ ସହିତ ମନ୍ଦିର ନିର୍ମାଣର ସଂପର୍କ ଅଭେଦ୍ୟ । ବଣିଜ ବନ୍ଦ ହେଇଗଲା ପରେ, ରାଜକୋଷ ଶୂନ୍ୟ ହେଇଗଲା ଓ ତା'ପରେ ମନ୍ଦିର ନିର୍ମାଣ କାମରେ ଆପେ ଆପେ ପୂର୍ଣଚ୍ଛେଦ ପଡ଼ିଲା । କପାଳରେ ବିଜୟଟୀକା ପିନ୍ଧେଇଦେଇ ନିଜ ସ୍ୱାମୀଙ୍କୁ ଯୁଦ୍ଧକ୍ଷେତ୍ରକୁ ବିଦାୟ ଦେବାର ବୀରୋଚିତ, ଅଥଚ ଲୋମହର୍ଷଣକାରୀ ଦୃଶ୍ୟ ମନ୍ଦିରମାନଙ୍କ ଦେହରେ ଉତ୍‌କୀର୍ଣ୍ଣ କରାଯାଇଛି । କାରଣ ବହୁ ମନ୍ଦିର ବିଜୟର ସ୍ମାରକୀ । ଏଣୁ ଶିଳ୍ପୀକୁଳର ମାଇପିଜଣକ ନିଜେ ମନ୍ଦିର ଗଢୁନଥିଲେ ମଧ୍ୟ ଗଢ଼ଣପ୍ରଣାଳୀ ଓ ପରମ୍ପରାକୁ ନେଇ ସଚେତନ ଅଛି ଏବଂ କୋଣାର୍କ ମନ୍ଦିର ନିର୍ମାଣର ପ୍ରାକ୍ ପ୍ରସ୍ତୁତି ବେଳେ ଜଣେ ଓଡ଼ିଆଣୀର ପରାମର୍ଶ ଶିବେଇ ସାମନ୍ତରାୟଙ୍କ ଚିନ୍ତାଗ୍ରସ୍ତ ମନରେ ଅପାର ଭରସା ଭରି ଦେଇପାରିଛି ।

ପୁରୁଷେ ଠାରୁ ବଳି ଉଚ୍ଚ ପ୍ରକାଣ୍ଡ କଳାମୁଗୁନି ପଥରରେ ଖୋଦେଇ କରାଯାଇଥିବା ସୂର୍ଯ୍ୟଙ୍କ ପୂଜିତ ପ୍ରତିମା ଚୁମ୍ବକ ପଥରର ଅଖଣ୍ଡ ଆକର୍ଷଣଶକ୍ତି ଫଳରେ ଗର୍ଭଗୃହରେ ଆକାଶରେ ସୂର୍ଯ୍ୟଭଳି

ଶୂନ୍ୟରେ ଝୁଲି ରହିଥିଲା କହିଲେ ତାହା ଆମ ମନରେ କୌତୂହଳ ସୃଷ୍ଟି କରୁଛି ସିନା, ଗୋଟିଏ ଜାତିର ଶୈଳ୍ପିକ ପରାକାଷ୍ଠାକୁ ନ୍ୟୂନ କରୁନାହିଁ । ଏବେ ଗର୍ଭଗୃହରେ ପ୍ରତିମା ତ ନାହିଁ, ପୁଣି ମନ୍ଦିରର ଛାତ ଫୁଙ୍ଗୁଳା ପଡିଛି, ହୁଏତ ଚୁମ୍ବକ ପଥରଯାକ କିଏ ଚୋରେଇ ନେଇଯାଇଥିବ, ଏଭଳି ଧାରଣା ସୃଷ୍ଟି ହେବା ସ୍ୱାଭାବିକ । କୋଣାର୍କର ମୂଳମନ୍ଦିରର ଶିଖରରେ ଖଞ୍ଜାଯାଇଥିବା ଚୁମ୍ବକପଥର ସମୁଦ୍ରରେ ଆତଜାତ ହେଉଥିବା ବିଶାଳପୋତ ଗୁଡିକୁ କୂଳକୁ ଟାଣିଆଣୁଥିବା ଘଟଣାଟି ମଧ୍ୟ କପୋଳକଳ୍ପିତ ହେଲେ ବି ନିନ୍ଦନୀୟ ପ୍ରସଙ୍ଗ ନୁହେଁ । ଏବେ ମୂଳମନ୍ଦିର ତ ଭାଙ୍ଗିଯାଇଛି । ଏଣୁ ତା' ସହିତ ଚୁମ୍ବକପଥରଗୁଡ଼ିକ ଅନ୍ତର୍ଦ୍ଧାନ ହେଇଯାଇଛି ବୋଲି ବିଶ୍ୱାସ ଜନ୍ମେଇ କାଳ୍ପନିକ ବିସମ୍ବାଦରୁ ମୁକ୍ତି ମିଳିଯିବ । କିନ୍ତୁ ଧରମାର-ଆତ୍ମହତ୍ୟା କ'ଣ ସ୍ୱଇଚ୍ଛାରେ କୃତ ବୀରୋଚିତ ତ୍ୟାଗ ଯାହା ଦେଶ ପାଇଁ ଓ ଶିଳ୍ପୀକୂଳର ମାନରକ୍ଷା ପାଇଁ ଉଦ୍ଦିଷ୍ଟ ? ନା ତାହା ଗଣଧର୍ଷଣ ଭଳି ଏକ ଗର୍ହିତ ଅପରାଧ । ଏ ପ୍ରସଙ୍ଗ ଏବେ ଓଡ଼ିଆ ସାହିତ୍ୟର ବେଷ୍ଟନୀରୁ ଉତ୍ତୁରିପଡି ଲଳିତକଳାର ଗୌରବମୟ ଶୀର୍ଷରେ ଶିଳ୍ପୀକୂଳର ଗୋଟିଏ ନାଗକ ପାପଭଳି ଲଟକି ରହିଛି । ଯେଉଁ କୁଳବୃଦ୍ଧ ଓଡ଼ିଆ ଶିଳ୍ପୀମାନେ ଧର୍ମପଦ ପୁରସ୍କାରରେ ବିଭୂଷିତ ହେଉଛନ୍ତି ବା ଷାଠିଏ ବର୍ଷ ବୟସର ଧର୍ମପଦ ସୀମା ଅତିକ୍ରମିବାକୁ ଅଧୈର୍ଯ୍ୟ ହେଉଛନ୍ତି ଉଭୟେ ଧରମା-ଆତ୍ମହତ୍ୟା ଦୋଷରେ ଦୋଷୀ । ଆସନ୍ନ ମୃତ୍ୟୁକୁ ଅପେକ୍ଷା କରିଥିବା ରୋଗୀର ଜରାଜୀର୍ଣ୍ଣ ହାତରୁ ଲୋଭୀ ବ୍ରାହ୍ମଣ ଗୋଦାନ ଗ୍ରହଣ କରିବାରେ ଯେଉଁ ଅବିମୃଶ୍ୟତା ଭରିରହିଛି, ଧର୍ମପଦ ପୁରସ୍କାର ପ୍ରଦାନରେ ସେଭଳି ଏକ ଅତ୍ୟନ୍ତ ଲଜ୍ଜାହୀନ ବ୍ୟବସ୍ଥା ଅନ୍ତର୍ନିହିତ ଅଛି । ଦାତା ଓ ଗ୍ରହୀତା ଉଭୟେ ଏହି ଘୃଣ୍ୟ ପରମ୍ପରାର ଅଂଶୀଦାର । ଏ ବୃଦ୍ଧଶିଳ୍ପୀମାନଙ୍କ ଠାରେ ଧରମାର ସୃଜନ ସ୍ଫୁଲିଙ୍ଗର ଲେଶମାତ୍ର ନାହିଁ । ସେମାନଙ୍କ ମଧ୍ୟରୁ ଅଧିକାଂଶ ସ୍ଥାଣୁ, ଜୀବନର ସାୟାହ୍ନରେ ହୃଦରୋଗ, ଶ୍ୱାସରୋଗ ଓ ମଧୁମେହ ରୋଗରେ ପୀଡିତ । ଧର୍ମପଦ ପୁରସ୍କାରସଂଲଗ୍ନ ସ୍ୱଳ୍ପର ଧନରାଶି ଏସବୁ ରୋଗର ଚିକିତ୍ସା ପାଇଁ କ'ଣ ଉଦ୍ଦିଷ୍ଟ ନା ଅବିବାହିତା କନ୍ୟାର ଯୌତୁକ ପାଇଁ ଉତ୍ସର୍ଗୀକୃତ ? ଏ ପ୍ରଶ୍ନର ଉତ୍ତର କିଏ ବା ଦେଇପାରିବ ? ଯେଉଁମାନେ ଦେଇ ପାରନ୍ତେ ସେମାନେ ସମସ୍ତେ ତ ଷଷ୍ଟ୍ୟୁତ୍ତର ଧର୍ମପଦ ।

ଧର୍ମପଦ ପୁରସ୍କାର ପ୍ରସଙ୍ଗଟି ଲଳିତକଳା ଏକାଡେମୀରେ ଆଲୋଚିତ ହେଉଥିବାବେଳେ ମୁଁ କାର୍ଯ୍ୟକାରୀ ସମିତିର ସଭ୍ୟଥିଲି ଏବଂ ଏକାଡେମୀର ସର୍ବୋଚ୍ଚ ପୁରସ୍କାରକୁ ଧର୍ମପଦ ନାମରେ ନାମିତ ନ କରିବା ପାଇଁ ପ୍ରସ୍ତାବ ଦେଇଥିଲି । କାରଣ ଏଭଳି ନାମକରଣର ଅବଗୁଣ ସହିତ ଅଙ୍ଗାଙ୍ଗି ଭାବେ ଜଡ଼ିତ ଏକ ଘୃଣ୍ୟ କିମ୍ବଦନ୍ତୀ ସଂପର୍କରେ ମୁଁ ସଚେତନ ଥିଲି । କିନ୍ତୁ ମୋର ଅନ୍ୟାନ୍ୟ ଶିଳ୍ପୀବନ୍ଧୁଙ୍କ ବିଚାର ଅଲଗାଥିଲା ଓ ଭବିଷ୍ୟତରେ ଧର୍ମପଦ ହେବାର ପ୍ରଲୋଭନକୁ ସେମାନେ ଏଡାଇ ପାରିନଥିଲେ ।

ପୁରୀ ଗଜପତି ରାଜାଙ୍କ ଉଆସ କାନ୍ଥରେ ଅଙ୍କିତ ଭିତ୍ତିଚିତ୍ର ବ୍ୟତୀତ, କୋଣାର୍କର କିମ୍ବଦନ୍ତୀ ଉପରେ ଆଧାରିତ ଭିତ୍ତିଚିତ୍ର ବା ପଟଚିତ୍ରର ନଜିର ଦେଖିବାକୁ ମିଳେନାହିଁ । ମନ୍ଦିର ଚୂଡ଼ାରୁ ଡେଇଁ

ଧରମା ଆତ୍ମହତ୍ୟା କରୁଥିବାର ଦୃଶ୍ୟ ଶିଳ୍ପୀକୁଳଙ୍କ ପାଇଁ ଏତେ ଘୃଣ୍ୟ ଓ ଲଜ୍ଜାଜନକ ବ୍ୟାପାର ଯେ ଚିତ୍ରରେ ତାହାର ଅନୁରଣନ କୁତ୍ରାପି ଦେଖାଯାଏ ନାହିଁ । ପୁରୀ ଉଆସର ଚିତ୍ର ମଧ ଆଧୁନିକ, ଶହେ ବର୍ଷରୁ ଅଧିକ ପୁରୁଣା ନୁହେଁ । ସାହିତ୍ୟ ଓ କଳାରେ ସମନ୍ୱିତ ସୃଜନ ପରମ୍ପରା ବଳବତ୍ତର ଥିଲେ ବି ସାହିତ୍ୟର ଧର୍ମପଦ ଶିଳ୍ପକଳାରେ ପ୍ରତିଫଳିତ ନ ହୋଇଥିବା ଖୁସୀର କଥା । ବିଂଶ ଶତାବ୍ଦୀର ମଧଭାଗରେ ଗୋପାଳ ଚରଣ କାନୁନ୍‌ଗୋ ପ୍ରଭୃତି ଓଡ଼ିଆ ଶିଳ୍ପୀମାନେ ଧର୍ମପଦ ସମେତ ବହୁ ଲୋକକାହାଣୀର ଚିତ୍ରରୂପ ସର୍ଜନା କରିଥିଲେ ମଧ କାଞ୍ଚି କାବେରୀ ପଟି ଭଳି ସେଗୁଡିକ ଚିତ୍ର ପରମ୍ପରାର ବେଦୀରେ ଅଭିଷିକ୍ତ ହୋଇନାହାନ୍ତି । ପାରମ୍ପରିକ ଶିଳ୍ପୀମାନସ ଏଭଳି ସାହିତ୍ୟ ଓ କଳାର ଏକ ମିଶ୍ରସ୍ୱାଦକୁ ଗ୍ରହଣ କରୁନଥିବା ବେଳେ ବିଂଶ ଶତାବ୍ଦୀର ଶେଷ ଭାଗରେ ଲଳିତକଳା ଏକାଡେମୀ ଏହି ବିସ୍ମୃତ କଥାକୁ ପୁରସ୍କାର ମାଧ୍ୟମରେ ଉଜ୍ଜୀବିତ କରେଇବା ନିଶ୍ଚିତ ଏକ ବିବାଦୀୟ ଘଟଣା ।

କୋଣାର୍କ ମନ୍ଦିରର ପାରମ୍ପରିକ ଇତିହାସ ଜାଣିବା ପାଇଁ ଚାରିଗୋଟି ପ୍ରାମାଣିକ ତାଳପତ୍ର ପୋଥି ଯଥା (୧) ପଦ୍ମକେଶର ମନ୍ଦିରର ସ୍ଥାପତ୍ୟ ବିବରଣ (୨) ତ୍ରିକାଳ ମହାମାୟା ଗାୟତ୍ରୀ ଅର୍ଚ୍ଚନା ବିଧି (୩) ବୟଚକଡ଼ା ଏବଂ (୪) ପଦ୍ମକେଶର ଦେଉଳ କର୍ମାଙ୍ଗୀ । ଏସବୁ ପୋଥିର ବିବରଣ ଓ ନିର୍ଯ୍ୟାସ 'ନିଉ ଲାଇଟ୍ ଅନ୍ ଦି ସନ୍ ଟେମ୍ପଲ୍ ଅଫ୍ କୋଣାର୍କ' ଗ୍ରନ୍ଥରେ ୧୯୭୨ ମସିହାରେ ପ୍ରକାଶିତ । ଏହି ପୋଥିଗୁଡିକ ମଧରୁ ଯଦିଓ କେତେକ ପୁଷ୍ପିକାର କାଳ ନିର୍ଣ୍ଣୟରେ କତିପୟ ଐତିହାସିକଙ୍କ ଭିନ୍ନ ମତ ଅଛି ତଥାପି ଏଗୁଡିକର ବିବରଣ ଅତ୍ୟନ୍ତ ହୃଦୟସ୍ପର୍ଶୀ । କଳିଙ୍ଗ ଶିଳ୍ପ ପରମ୍ପରାର ମନ୍ଦିର ନିର୍ମାଣ କୌଶଳ ସଂପର୍କରେ ଜାଣିବାକୁ ହେଲେ ଏହି ଗ୍ରନ୍ଥ ଯେ ଅପରିହାର୍ଯ୍ୟ ଏଥିରେ ଦ୍ୱିମତ ନଥାଇପାରେ ।

ଏମାନଙ୍କ ମଧରୁ ବୟଚକଡ଼ା ପୋଥି ଦେଉଳ ନିର୍ମାଣ ହିସାବ ପାଇଁ ଉଲ୍ଲେଖ ଯୋଗ୍ୟ । ହିସାବ ନିକାସ ସହିତ ଏ ପୋଥିରେ ଦିଆଯାଇଥିବା ତତ୍‌କାଳୀନ ସାମାଜିକ ଭିତ୍ତିଭୂମି ଏବଂ ଶିଳ୍ପୀ, ସ୍ଥପତି, ସମ୍ରାଟ, ପ୍ରଶାସକ ଓ ଦୈହିକ ଶ୍ରମ କରୁଥିବା ଅସଂଖ୍ୟ ଲୋକଙ୍କ ଭିତରର ମାନବିକ ସମ୍ବନ୍ଧ ପାଠକକୁ ଅଭିଭୂତ କରେ । ଏହି ବ୍ୟକ୍ତି ବିଶେଷଙ୍କ ଚାରିତ୍ରିକ ବିଶେଷତ୍ୱ ସେକାଳର ଶିଳ୍ପୀମାନଙ୍କୁ ବୁଝିବାରେ ସହାୟକ ହୁଏ । ମନ୍ଦିର କାମରେ ନିଯୁକ୍ତ ସାଧାରଣ ଶ୍ରମଜୀବୀମାନେ ପରମ୍ପରାରେ ଅଜ୍ଞ ନଥିଲେ, ସେମାନେ କ୍ରୀତଦାସ ଭଳି ଦିନରାତି ବେଠି ଖଟୁ ନଥିଲେ ବରଂ ସେମାନଙ୍କ ସାମୁହିକ ଭାବଗତ ସଂପୃକ୍ତି ମନ୍ଦିର ନିର୍ମାଣକୁ ଆହୁରି ଗରିମାମୟ କରିଦେଇଥିଲା । ବୟଚକଡ଼ା ପୋଥିରୁ ମନ୍ଦିର ନିର୍ମାଣର ସଠିକ କ୍ରମ, ଶିଳ୍ପୀମାନେ ଗ୍ରହଣ କରୁଥିବା ଭେଟି ଓ ଉପଢୌକନର ବିବରଣ ତଥା ସେମାନଙ୍କ ନାଁ ଗାଁ ଆମେ ପାଇପାରୁଛୁ । ଯଦିଓ ମହାରାଜା ଲାଙ୍ଗୁଳା ନରସିଂହ ଦେବ କୋଣାର୍କ ଶିଳ୍ପୀଙ୍କୁ ପାନଖିଲ ବଢ଼େଇ ଦେବାର ଆମୋଦିତ ଘଟଣା ବୟଚକଡ଼ା ପୋଥିରେ ଉଲ୍ଲେଖ ନାହିଁ ତଥାପି ବନ୍ଧୁତା ଓ ମାନବିକ ଗୁଣର ବହୁ ନୂତନ ଦିଗ ବିବରଣ ମାନଙ୍କରୁ ସ୍ୱତଃ ଉନ୍ମୋଚିତ ହୋଇଯାଉଛି । ଏଥିରୁ ଜଣାପଡୁଛି ସୂତ୍ରଧର ସଦାଶିବ ସାମନ୍ତରାୟ

ମହାପାତ୍ର ସୂର୍ଯ୍ୟରଥ ମନ୍ଦିରର ମୁଖ୍ୟବିଜ୍ଞାଣି, ମୁଖ୍ୟସ୍ଥପତି ଓ ମୁଖ୍ୟବ୍ୟବସ୍ଥାପକ ଥିଲେ । ଯଦିଚ ମହାଶ୍ରମ ନରସିଂହ ଦେବ ମନ୍ଦିର ନିର୍ମାଣ ପାଇଁ ପ୍ରେରଣା ଓ ପୃଷ୍ଠପୋଷକତା ଯୋଗାଇ ଦେଇଛନ୍ତି, ତଥାପି ମନ୍ଦିରର ନିର୍ଦ୍ଦେଶକ ଓ ରଚୟିତା ହେଲେ ସଦାଶିବ । ସଦାଶିବ ନିଜ ହାତରେ ପଶ୍ଚିମ ନିଶାମନ୍ଦିର ପାଇଁ ପୁଷନ୍‌ଙ୍କ ମୂର୍ତ୍ତି ଏବଂ ଗର୍ଭଗୃହ ପାଇଁ ମହାଭାସ୍କରଙ୍କ ପ୍ରତିମା ନିର୍ମାଣ କରିଥିଲେ । ଏଣୁ ତାଙ୍କୁ କୋଣାର୍କର ସର୍ବଶ୍ରେଷ୍ଠ ଭାସ୍କର ବୋଲି ନିର୍ଦ୍ଦ୍ୱନ୍ଦ୍ୱରେ କୁହାଯିବ । ସଦାଶିବଙ୍କ ବ୍ୟତୀତ ଆଉ କେତେଜଣ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରୁଥିବା ଶିଳ୍ପୀ ହେଲେ ମୁଖ୍ୟ ନିର୍ବାହୀ ସ୍ଥପତି ଗଦାଧର ମହାପାତ୍ର, ଶିଳ୍ପୀମୁଖ୍ୟ ଗଙ୍ଗା ମହାପାତ୍ର, ମୁଖ୍ୟଭାସ୍କର ନାରାୟଣ ମହାପାତ୍ର ଓ ଆଲେଖ୍ୟବିଜ୍ଞାଣି ବିଶ୍ୱନାଥ ମହାପାତ୍ର ପ୍ରଭୃତି ।

ବୟଚକଡ଼ା ପୋଥିରେ ଲେଖାଅଛି 'ଆଷାଢ଼ ଶୁକ୍ଳ ଦ୍ୱିତୀୟା ଯାଏଁ ମୂଳମନ୍ଦିର ଚୂଡ଼ାରେ କଳଶ ସ୍ଥାପନା ଶେଷ ହୋଇନଥିଲା । ସେହି କାର୍ଯ୍ୟରେ ବାରମ୍ବାର ବାଧା ଉପୁଜୁଥିଲା । ଏଣୁ ସଦାଶିବ ଗୋଟିଏ ଚିଠି ଲେଖି ମୁଦକରି ସମ୍ରାଟଙ୍କ ନିକଟକୁ ପଠେଇ ଦେଲେ ଏବଂ ପାଲିଙ୍କିରେ ଗାଁକୁ ଗଲେ । ଧର ସିଂହ ନାମକ ଜଣେ ପ୍ରହରୀ ଘୋଡ଼ାରେ ଚିଠିଟି ନେଇ ବିଡ଼ାନାସୀ କଟକରେ ରହୁଥିବା ସମ୍ରାଟଙ୍କ ନିକଟକୁ ଗଲା ଏବଂ ଏହି ବାବଦକୁ ସେ ଚବିଶି ଗୌଣୀ ଧାନ ପାଇଲା ।'

'ବଳଶ୍ରୀ' ପାଲିଙ୍କିରେ ବସି ସୂତ୍ରଧରଙ୍କ ଗାଁ ଡିହପାଟଣା ପଥୁରିଆ ପଡ଼ାକୁ ଯାଇ ସଦାଶିବଙ୍କ ଅସୁସ୍ଥତା ଖବର ବୁଝିଲେ । ରାଜାଙ୍କ ସାଙ୍ଗରେ ହାତୀପିଠିରେ ନାରାୟଣ ମହାପାତ୍ର, ଗଙ୍ଗା ମହାପାତ୍ର ଓ ଗଦାଧର ମହାପାତ୍ର ମଧ ଗଲେ । ପାଲିଙ୍କି ବୋହିବା ପାଇଁ ସାତ ଗୌଣୀ ଧାନ ଓ ହାତୀଆଳଙ୍କୁ ତିନିଗୌଣୀ ଧାନ ଦିଆଗଲା ।

ସୂତ୍ରଧରଙ୍କ ଅସୁସ୍ଥତା ଖବର ପାଇ ତାଙ୍କ ପୁଅ ଧର୍ମ ମହାପାତ୍ର ଘର ଫେରିଲେ । ସିଏ ତାଙ୍କ ମାମୁଁ ନିଧି ମହାପାତ୍ରଙ୍କ ସଂଗେ ଦକ୍ଷିଣ ରାଜ୍ୟକୁ ଯାଇଥିଲେ । ବାପାଙ୍କୁ ରୋଗ ଶଯ୍ୟାରେ ଶୋଇଥିବା ଦେଖି ଧର୍ମ ବ୍ୟସ୍ତ ହୋଇପଡିଲେ ଓ ନିଜର ସନ୍ଦେହ ମୋଚନ ପାଇଁ ପଚାରିଲେ, ତମ କଳଶ ମୁଣ୍ଡି କସା ଖପୁରି ନା ବସା ଖପୁରି । ଖପୁରିର ଶୈଳୀ ସଂପର୍କରେ ବୁଝିଦେଲା ପରେ ଧର୍ମ ଭରସା ଦେଇ କହିଲେ, ବାପା ତମେ ବ୍ୟସ୍ତ ହୁଅନି ମୁଁ ତାକୁ ବସେଇ ଦେଇପାରିବି । ତା ପରଦିନ ଗଙ୍ଗା ମହାପାତ୍ରଙ୍କ ସହ ହାତୀରେ ବସି କୋଣାର୍କ ପହଞ୍ଚି ସୂତ୍ରଧରଙ୍କ ଘରେ ରହିଲେ ।

ଧର୍ମ ତା ଆରଦିନ ସିଂହଦ୍ୱାର ଠାରୁ ଶିଖର ଶୀର୍ଷଯାଏ ଦେଉଳର ମାପ ନେଲେ । ଦେଉଳର ନକ୍‌ସା ତନଖି କଲେ । ଦୁଇଦିନ ପରେ ସୂତ୍ରଧର ସଦାଶିବ ସୁସ୍ଥ ହୋଇ କୋଣାର୍କ ଫେରିଲେ ।

ଧର୍ମ ଦି'ହାତ ଉଚ୍ଚାର ପଦ୍ମଫୁଲ ଆକାରର ଦି'ଥାକ ଥିବା ଗୋଟିଏ ଏଗାରୁପଚ୍ଛିକ ଚୁମ୍ବକ ତିଆରି କଲେ । ଧର୍ମ ମହାପାତ୍ରଙ୍କ ନିର୍ଦ୍ଦେଶରେ ହାତେକିଆ ବେଧର ଖପୁରି ଗାତକୁ ବଢ଼େଇ

ଦିଆଗଲା । ତା ଭିତରେ ଏଗାରୁପଚ୍ଛିକକୁ ଖଞ୍ଜି ଦିଆଗଲା । ନିଧି ମହାପାତ୍ର, ରାମ ମହାପାତ୍ର ଆଉ ତିନିଜଣ ପଥୁରିଆ ଏହି କାମରେ ଧର୍ମ ମହାପାତ୍ରଙ୍କୁ ସାହାଯ୍ୟ କରି ଆଠଗୌଣୀ ଧାନ ପାଇଲେ ।

ଗୋଟିଏ ରାତି ପରିଶ୍ରମ କରି ସୂତ୍ରଧର ଗଙ୍ଗା ମହାପାତ୍ର ଓ ଧର୍ମ ମହାପାତ୍ର କଳଶ ସ୍ଥାପନା ସାରିଦେଲେ । ଖଜଣା ରକ୍ଷକ ସହସ୍ର ମଲ୍ଲଙ୍କ ନିର୍ଦ୍ଦେଶରେ ଧର୍ମ ମହାପାତ୍ରଙ୍କୁ ପାଞ୍ଚମାଢ଼ ସୁବର୍ଣ୍ଣ ଓ ହଳେ ପାଟଯଥା ଦିଆଗଲା ।

ଆଷାଢ଼ ଶୁକ୍ଳ ଏକାଦଶୀ ଦିନ କୋଣାର୍କ ବେଢ଼ାରେ ରାଜଗୁରୁଙ୍କ ସହିତ ମହାଶ୍ରମ ବିଜେହୋଇ ଧର୍ମ ମହାପାତ୍ରଙ୍କ ମୁଣ୍ଡିମରା କାମର ପ୍ରଶଂସା କଲେ । କଳଶ ସ୍ଥାପନା ମୁଖ୍ୟତଃ ସୂତ୍ରଧରଙ୍କ ନିଜସ୍ୱ କର୍ତ୍ତବ୍ୟ ହୋଇଥିବାରୁ ଶିଳ୍ପୀ କୁଳର ଗୌରବରେ କାଳେ ଆଞ୍ଚ ଆସିବ ଭାବି ଧର୍ମ ମହାପାତ୍ର ରାତି ରାତି ହାତୀ ପିଠିରେ ଅଙ୍ଗରକ୍ଷକ ନେଇ ଘରକୁ ଫେରିଲେ । ମହାରାଜାଙ୍କ ଆଦେଶରେ ଧର୍ମ ମହାପାତ୍ରଙ୍କ ନାଁ ଲିପିବଦ୍ଧ ହେଲେ ଅନ୍ୟଶିଳ୍ପୀଙ୍କ ଅସୂୟା ବଢ଼ିଯିବ ଏଣୁ ସଦାଶିବଙ୍କ ପକ୍ଷର ବିଭିନ୍ନ ଶିଳ୍ପୀଙ୍କ ନାଁରେ ସତୁରି ମାଢ଼ ସୁବର୍ଣ୍ଣ ଦିଆଗଲା ବୋଲି ଲେଖାଗଲା ।

ଆଷାଢ଼ ଶୁକ୍ଳ ଦ୍ୱାଦଶୀ ଦିନ ରାମ ମହାପାତ୍ର, ମୁକୁନ୍ଦ ମହାରଣା, ନିଧି ମହାପାତ୍ର କଳଶର ଉପର ଥାକକୁ ମନ୍ଦିର ଚୂଡ଼ା ଉପରେ ନେଇ ଥୋଇଲେ । ବୟଚକଡ଼ାରେ ଲିଖିତ ମନ୍ଦିର ବିବରଣୀରୁ ଜାଣିହେବ ଯେ ଧରମା ଦେଉଳର ମୁଣ୍ଡିମାରିବା କଥା ସମ୍ରାଟ କେବଳ ଅବଗତ ନଥିଲେ ସେ କଳଶ ସ୍ଥାପନା ବିଧିରେ ମୁଖ୍ୟ ପୁରୋଧା ଥିଲେ । ଧର୍ମ ମହାପାତ୍ର ତ କଳଶର ତଳ ବଇଠା ଭାଗକୁ ବସେଇ ସାରିଥିଲେ ତା'ପରେ ଦ୍ୱାଦଶୀ ଦିନ କଳଶର ଉପର ଘୋଡ଼ଣୀକୁ ବାରଜଣ ପାଇଟାଳ ଚାର ଓ ଭାର ସାହାଯ୍ୟରେ ଗର୍ଭଗୃହ ଉପରକୁ ଉଠେଇଲେ । ରାମ ମହାପାତ୍ର, ମୁକୁନ୍ଦ ମହାପାତ୍ର ଏବଂ ନିଧି ମହାପାତ୍ର ପ୍ରଭୃତି କାରିଗରଙ୍କ ତତ୍ତ୍ୱାବଧାନରେ କଳଶ ଘୋଡ଼ଣୀ ବସାଗଲା । କଳଶ ଗର୍ଭରେ ରତ୍ନମୁଦ ଦିଆଗଲା । ଧଳାଧାନ ଦୁଇଗଉଣି, ଦହି ଦୁଇକୁଞ୍ଚା, ନବରତ୍ନପଥର ଅଠରଖଣ୍ଡ, ନପୁଂସକଶିଳା ଖଣ୍ଡେ, ହରିତାଳଖଣ୍ଡ ପାଞ୍ଚତୋଳା, ଶୁଦ୍ଧକର୍ପୂର ଦଶତୋଳା, ସୁରମଂସୀ ନାମକ ସୁଗନ୍ଧ ଗଛର ମଂଜି ଆଠତୋଳା, ଶାଳଝୁଣା ଦଶତୋଳା, ସୁବର୍ଣ୍ଣ ଖଣ୍ଡ ବାରଗୋଟା, ରଜତ ଖଣ୍ଡ କୋଡିଏ ଗୋଟା - ଏଭଳି ଦ୍ରବ୍ୟମାନ ମନ୍ତ୍ରଉଚ୍ଚାରଣ ସହ କଳଶ ଗର୍ଭରେ ନିକ୍ଷେପ କରି ମୁଦ ମରାଗଲା । ଏବେ ସୂତ୍ରଧର ଗଙ୍ଗା ମହାପାତ୍ର, ନାରାୟଣ ମହାପାତ୍ର ସୂତ୍ରଧରଙ୍କ ଘରୁ ପଦ୍ମଦଣ୍ଡକୁ କାନ୍ଧରେ ବୋହି ଯଜ୍ଞଶାଳାକୁ ଆଣିଲେ । ଯଜ୍ଞବିଧି ଶେଷ ହେଲାପରେ ମହାଶ୍ରମଙ୍କ ନିର୍ଦ୍ଦେଶରେ ପଚିଶିଜଣ କାରିଗର ପଦ୍ମଦଣ୍ଡକୁ ମନ୍ଦିର ଉପରକୁ ଉଠେଇଲେ । ମହାଶ୍ରମ ପୀଠ ଉପରେ ଦଣ୍ଡାୟମାନ ହୋଇ ପଦ୍ମଦଣ୍ଡକୁ ସ୍ପର୍ଶ କଲେ ଏବଂ ରାଜଗୁରୁଙ୍କୁ ଦୁଇ ମାଢ଼ ସୁବର୍ଣ୍ଣ ଦକ୍ଷିଣା ଦେଲେ । ଦିନର ତୃତୀୟ ପ୍ରହରରେ ପଦ୍ମଦଣ୍ଡ କଳଶ ଗର୍ଭରେ ସ୍ଥାପିତ ହେଲା । ରାଜଗୁରୁ ପଦ୍ମଦଣ୍ଡକୁ ପଞ୍ଚାମୃତରେ ସ୍ନାନ କରାଇଲେ ଓ ତା ମୁଣ୍ଡରେ ଗୋଟିଏ ନାଲିଆ ଖଣ୍ଡୁଆ ବାନ୍ଧିଲେ ।

ବିରିଡାଡିଆ ପିଠା ତିଆରି କରିବା ପାଇଁ ପୁରୁଷୋତ୍ତମ କ୍ଷେତ୍ରରୁ ଶ୍ରୀମନ୍ଦିରର ରୋଷେଇଆ ଆସି ପହଞ୍ଚିଲେ । ଏସବୁ ବିଧି ବଢୁ ବଢୁ ସନ୍ଧ୍ୟା ଉପଗତ ହେଲା । ତିରିଶି ଜଣ ଭେଣ୍ଡା ଜଳନ୍ତା ମଶାଲ ଧରି ଠିଆ ହେଲେ । ମନ୍ଦିରର ପୀଠ ଭାଗକୁ ଆଠଜଣ ଭଣ୍ଡାରୀ ପରିଷ୍କାର କଲେ ଏବଂ କାରିଗରଙ୍କୁ ଭୋଜିରେ ଆପ୍ୟାୟିତ କରାଗଲା । ପଦ୍ମଦଣ୍ଡ ସ୍ଥାପନା ଉତ୍ସବ ଶେଷ ହେଲାପରେ ଗୋଟିଏ ବଡ଼ହାଣ୍ଡିରେ ପିଠାଭର୍ତ୍ତି କରି ଧରମା ଓ ସୂତ୍ରଧରଙ୍କ ପରିବାର ପାଇଁ ହାତୀପିଠିରେ ପଠାଗଲା ଓ ସେଥିପାଇଁ ହାତୀଆଳଙ୍କୁ ତିନିଗଉଣୀ ଧାନ ସିଜ ହେଲା । ଏହାପରେ ମହାଶ୍ରମ, ରାଜଗୁରୁ ଏବଂ ଅନ୍ୟମାନେ ଚାରୋଟି ହାତୀରେ ପୁରୁଷୋତ୍ତମକୁ ଫେରିଲେ ।

ଉପରୋକ୍ତ ବିସ୍ତୃତ ବିବରଣୀରୁ ସ୍ପଷ୍ଟଭାବେ ଜାଣିହେଉଛି ମହାରାଜା ନରସିଂହ କଳଶ ସ୍ଥାପନା ସହିତ ସଂପୃକ୍ତ ଥିଲେ ଏବଂ ତାଙ୍କ ପୌରୋହିତ୍ୟରେ ଏହି ବିଧି ସଂପାଦିତ ହେଉଥିଲା । ଏହି କଳଶ ସ୍ଥାପନା କାର୍ଯ୍ୟରେ ଧରମାର ସଶ୍ରଦ୍ଧ ଯୋଗଦାନ ଥିବାରୁ ତାଙ୍କ ନିକଟକୁ କଳଶ ପ୍ରସାଦ ଉପଢ଼ୌକନ ପଠାଯାଇଥିଲା ।

## ଚାରି

ଯଦି ଓଡ଼ିଆ ଭାଗବତାକାର ଜଗନ୍ନାଥ ଦାସ ବା କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ନାମରେ ଓଡ଼ିଶା ସାହିତ୍ୟ ଏକାଡେମୀ ଓ ସଂଗୀତ ନାଟକ ଏକାଡେମୀର ଶୀର୍ଷ ସମ୍ମାନଗୁଡିକ ନାମିତ ହେବାରେ ବାଧାରହୁନାହିଁ, କୋଣାର୍କ ମନ୍ଦିରର ସୂତ୍ରଧର ସଦାଶିବ ସାମନ୍ତରାୟ ମହାପାତ୍ରଙ୍କ ନାଁରେ ଲଳିତକଳାର ଶୀର୍ଷ ପୁରସ୍କାର କାହିଁକି ବା ନାମିତ ହେଇପାରିବନି ? ସଦାଶିବ ଜଣେ ସମ୍ମାନାସ୍ପଦ ପ୍ରବୀଣ ସ୍ଥପତି ଓ ଭାସ୍କର ଶିଳ୍ପୀଥିଲେ । ଓଡ଼ିଆଜାତିକୁ କୋଣାର୍କ ତାଙ୍କର ହିଁ ଶୈଳ୍ପିକ ଅବଦାନ । ଯଦି ଲଳିତକଳା ଏକାଡେମୀ କର୍ତ୍ତୃପକ୍ଷ କୋଣାର୍କ ବା କୋଣାର୍କ ନିର୍ମାଣ ସହିତ ସଂପର୍କିତ ଜଣେ ଶିଳ୍ପୀଙ୍କ ନାମରେ ପୁରସ୍କାରର ପଦବୀ ସ୍ଥିର କରିବା ପାଇଁ ଚାହୁଁଥିଲେ ସେମାନଙ୍କ ପାଇଁ ତିନୋଟି ପଦବୀ ସହଜଲଭ୍ୟ ଥିଲା । ଗୋଟିଏ ଥିଲା ସର୍ବଜନଗ୍ରାହ୍ୟ କୋଣାର୍କ, ଅନ୍ୟଟି ସଦାଶିବ ଓ ତୃତୀୟଟି ଅବଶ୍ୟ କୋଣାର୍କର ଇଷ୍ଟ ସୂର୍ଯ୍ୟଙ୍କ ନାମରେ ସମ୍ମାନ । ସଦାଶିବ ସାମନ୍ତରାୟ ମହାପାତ୍ର ଲୋକମୁଖରେ ଶିବେଇ ସାଆନ୍ତାରାରେ ପରିଣତ ହେଇସାରି ଥିଲେ ଆଉ ବିଶ୍ୱନାଥ ମହାରଣା ବା ବିଶୁ ମହାରଣା ଧର୍ମ ମହାପାତ୍ର ପିତାଙ୍କ ସ୍ଥାନ ଅଧିକାର କରି ସାରିଥିଲେ । ବିଶୁ ସମ୍ମାନ ବା ବିଶୁକୁ ବିଶ୍ୱରେ ପରିଣତ କରି 'ବିଶ୍ୱସମ୍ମାନ' କହିଥିଲେ ବରଂ ବିବାଦ ରହିତ ହେଇଥାନ୍ତା ଓ ଓଡ଼ିଆ ଶିଳ୍ପୀମାନେ ବିଶ୍ୱମାନ୍ୟତା ପାଇଯାଆନ୍ତେ । ଧର୍ମପଦ କିମ୍ବଦନ୍ତୀ ଶିଳ୍ପୀବନ୍ଧୁମାନଙ୍କୁ ଆକୃଷ୍ଟ କଲା ଓ ସେମାନେ ଅବଲୀଳାକ୍ରମେ ଶିଶୁହତ୍ୟା ପାପରେ ଭାଗି ହେଇଗଲେ ଓ ଗୋଟିଏ ହୀନ ପରମ୍ପରାକୁ ମୁଣ୍ଡରେ ମୁଣ୍ଡେଇବା ପାଇଁ ଆଗଭର ହେଲେ ।

୨୦୦୮ ମସିହାର ଧର୍ମପଦ ପୁରସ୍କାର ପ୍ରଦାନ କରିବା ପାଇଁ ଯେଉଁଭଳି ନିନ୍ଦନୀୟ ପଦ୍ଧତି ବ୍ୟବହାର କରାଗଲା ସେଥିରେ ଶିଶୁହତ୍ୟା ପାପ ସହିତ ପ୍ରତିଭାହତ୍ୟା ବି ଯୋଡ଼ି ହୋଇଗଲା । ଧର୍ମପଦ ପୁରସ୍କାର ପାଇବାକୁ ହେଲେ ନିଜ ନାଁକୁ ନିଜେ ପ୍ରସ୍ତାବ କରିବା ପାଇଁ ଖବର କାଗଜ ବିଜ୍ଞାପନ ମାଧ୍ୟମରେ କୁହାଗଲା ଓ ଲଜ୍ଜାହୀନ ଭାବେ କିଛି ବୃଦ୍ଧଶିଳ୍ପୀ ଲଳିତକଳା ଏକାଡ଼େମୀର ଏହି କୁତ୍ସିତ ମାୟାଜାଲରେ ପଡିଗଲେ । କେବଳ ତାହା ନୁହେଁ ପରିଣତ ବୟସରେ ରାଜନେତାଙ୍କ ଭଳି ମୋଟାମୋଟି ଭାବେ ତିନିଜଣ ବୃଦ୍ଧଶିଳ୍ପୀ ଧର୍ମପଦ ପୁରସ୍କାରର ରାଜନୀତି ରଣାଙ୍ଗନରେ ଅବତୀର୍ଣ୍ଣ ହୋଇଗଲେ ।

ଏଠି ମୁଁ ମୋ ଭୂମିକାକୁ ପରିଷ୍କାର କରିଦେବାକୁ ଉଚିତ ମନେକରିବି । ମୁଁ କସ୍ମିନକାଳେ ଧର୍ମପଦ ପୁରସ୍କାର ପାଇଁ ମୋ ନିଜ ନାମ ପ୍ରସ୍ତାବ କରିନାହିଁ । ଶିଳ୍ପୀବନ୍ଧୁ ଦେବକୁଳ ନାରାୟଣ ରାଓ, ଶିବ ପାଣିଗ୍ରାହୀ ଏବଂ ପୂର୍ବତନ ଛାତ୍ରୀ ବିଦ୍ୟୁତଲତା ପାଟଶାଣୀ ମୋର ଜୀବନ ପଞ୍ଜିକା ସହ ଲଳିତକଳା ଏକାଡେମୀକୁ ମୋ ନାମ ପ୍ରସ୍ତାବ ଦେଇଥିଲେ । ମୁଁ ସେତେବେଳକୁ ବିଦେଶ ଗସ୍ତରେ ଥିଲି । ସେମାନେ ଦେଇଥିବା ପ୍ରସ୍ତାବ ସଂପର୍କରେ ମୁଁ ଆଦୌ ସଚେତନ ନଥିଲି କହିବା ସତ୍ୟର ଅପଲାପ ହେବ । ମୁଁ ଶୁଣିବାକୁ ପାଉଥିଲି ମୋର କେତେକ ବନ୍ଧୁ ଓ ପ୍ରାକ୍ତନ ଛାତ୍ରଛାତ୍ରୀ ମୋତେ ଧର୍ମପଦ କରିବା ପାଇଁ ଚେଷ୍ଟିତ । ମୁଁ ଏବେ ଅନ୍ତତଃ ବୁଝିପାରିଲି ଧର୍ମପଦ ହେବା କେତେ ବିପଜ୍ଜନକ ବ୍ୟାପାର । କାହା କାହା ଦେହରେ ଧର୍ମପଦ ସୁହାଏନି । ହାୟରେ ଧର୍ମପଦ !

ଜୀବହତ୍ୟା କରୁଥିବା, ମାଂସ ରାନ୍ଧୁଥିବା ଏବଂ ଜୀବହତ୍ୟା ବେଳେ ଉପସ୍ଥିତ ଥିବା ବ୍ୟକ୍ତି ମଧ୍ୟ ଜୀବହତ୍ୟା ଦୋଷରେ ଭାଗି ହେଲା ପରି ମୁଁ ମଧ୍ୟ ଧର୍ମପଦ ତାଲିକାରେ ନାଁ ଦରଜ କରେଇ ଧରମାର ଆତ୍ମହତ୍ୟା ଦୋଷରେ ଭାଗି ହୋଇଗଲି । ମୁଁ ଲଳିତକଳା ଏକାଡେମୀର ସଭାପତି ଥିବାବେଳେ ସେ ବର୍ଷର ଧର୍ମପଦ ପୁରସ୍କାର ପ୍ରଦାନ ପାଇଁ ଯେଉଁ ଚୟନ ପ୍ରକ୍ରିୟା ଆରମ୍ଭ ହୋଇଥିଲା ସେଥିରେ ଦୁର୍ନୀତିର ଧୂଆଁ କୁହୁଁଳିଥିଲା । କାର୍ଯ୍ୟନିର୍ବାହ ପ୍ରଣାଳୀରେ ବିଭିନ୍ନ ଅବ୍ୟବସ୍ଥା ହେତୁ ସଭାପତି ଓ ସଂପାଦକଙ୍କ ମଧ୍ୟରେ ମତାନ୍ତର ଘଟିଲା ଏବଂ ମୁଁ ଏକାଡେମୀରୁ ଇସ୍ତଫା ଦେବା ଶ୍ରେୟ ମଣିଲି । ଇସ୍ତଫା ଦେବାର ବିଭିନ୍ନ କାରଣ ମଧ୍ୟରୁ ଧର୍ମପଦ ପୁରସ୍କାର ଚୟନ-ଦୁର୍ନୀତି ଅନ୍ୟତମ ।

ଭୋଟ ଜରିଆରେ ମତସଂଗ୍ରହ ଗଣତନ୍ତ୍ରର ସ୍ୱୀକୃତ ବିଧି ହୋଇପାରେ କିନ୍ତୁ ଜଣେ ବୟୋଜ୍ୟେଷ୍ଠ ଶିଳ୍ପୀଙ୍କ ଜୀବନବ୍ୟାପୀ ସାଧନାରେ ପ୍ରତିଫଳିତ କୃତିକୁ ଆକଳନ କରିବାରେ ସାଧାରଣରେ ସମର୍ଥ ହୋଇ ମଧ୍ୟ ଆନୁଷ୍ଠାନିକ ସ୍ୱୀକୃତି ଦେବା ପାଇଁ ଭୋଟ ଗ୍ରହଣ ଏତେ ଲଜ୍ଜାହୀନ ବ୍ୟବସ୍ଥା ହୋଇପାରେ ପୁଣି ତାହା ସମ୍ଭ୍ରାନ୍ତ ଓ ନିରପେକ୍ଷ ଭାବରେ ପରିଚାଳିତ ନହେଲେ ଏତେ ଦୁଃଖଦ ଓ ବିଷାଦଗ୍ରସ୍ତ ହୋଇପାରେ, ନିଜେ ଭୁକ୍ତଭୋଗୀ ଧର୍ମପଦଟିଏ ନ ହେଲେ ଘଟଣାଟିର ଅବିମୃଶ୍ୟତା ହୃଦୟଙ୍ଗମ କରିହେବନି । ଯଦି ପୁରସ୍କାର ସଂଲଗ୍ନ ସାମାନ୍ୟ ଅର୍ଥପ୍ରାପ୍ତି ସ୍ୱୀକୃତିର ଏକମାତ୍ର ଲକ୍ଷ୍ୟ ହୋଇଥାଏ ତା'

ହେଲେ ଯେକୌଣସି ପଦ୍ଧତିରେ ତାକୁ ହାସଲ କରାଯାଇପାରେ । ବୃଦ୍ଧବ୍ୟାଘ୍ର ପ୍ରବଞ୍ଚନା କରି ହାତରେ ସ୍ୱର୍ଣ୍ଣ କଙ୍କଣ ଧରି ପୋଖରୀ ତୁଠରେ ପଥଚାରୀଙ୍କ ଅପେକ୍ଷାରେ ବସିଛି । ଉଦ୍‌ଘୋଷଣା କରୁଛି ହେ ବନ୍ଧୁ ! ମୋତେ ବିଶ୍ୱାସ କର, ମୁଁ ଏବେ ବୃଦ୍ଧ, ନଖଦନ୍ତ ବିହୀନ, ଏଣୁ ମୋ ଠାରୁ ଆଉ ବିପଦର ଆଶଙ୍କା କରନାହିଁ । ଆସ ! କଙ୍କଣ ନିଅ । କଙ୍କଣ ଗ୍ରହଣର ଦକ୍ଷତା ଅଛି ବୋଲି ବିଚାରି ମୋ ବନ୍ଧୁମାନେ ବାଘପାଖକୁ ଯିବା ପାଇଁ କେବଳ ପ୍ରବର୍ତ୍ତାଇନାହାନ୍ତି, ବାଘ ମୁହଁକୁ ଠେଲି ଦେଇଛନ୍ତି । ମୁଁ ମୂଢ଼, କଙ୍କଣ ଲୋଭରେ ବାଘପାଖକୁ ଯାଇଛି, (ଅନ୍ୟ ଉପାୟ ବା କ'ଣ ଥିଲା ?) ବାଘ ତା ଧର୍ମ ପାଳନ କରିଛି । ମୁଁ ଘର୍ମାକ୍ତ, ରକ୍ତାକ୍ତ ଓ କର୍ଦ୍ଦମାକ୍ତ ହୋଇଛି । କଙ୍କଣକୁ ଆବୋରି ନେଇଛି ସିନା, ମୋ ସୁନାମରେ କିନ୍ତୁ ଆଞ୍ଚ ଆସିଛି । ଏଭଳିକି କେତେକ ବନ୍ଧୁ ପ୍ରଶ୍ନ କରିଛନ୍ତି ଅର୍ଥଲୋଭରେ ତୁ ବିଶେଷରେ ଧର୍ମପଦ ସାଜିଲୁ !

ଲଳିତକଳା ଏକାଡେମୀରେ ଧର୍ମପଦ ପୁରସ୍କାର ମନୋନୟନ ପତ୍ରଗୁଡିକ ଯାଞ୍ଚ ହେଲାବେଳେ ଜଣାପଡିଲା ମୋ ମନୋନୟନ ପତ୍ରକୁ ବାଦ ଦେଲେ ଅନ୍ୟ ଶିଳ୍ପୀମାନେ ନିଜେ ଦାଖଲ କରିଥିବା ବା ଅନ୍ୟମାନଙ୍କ ଦ୍ୱାରା ଦାଖଲ କରେଇଥିବା ମନୋନୟନ ପତ୍ର ଲଳିତକଳା ଏକାଡେମୀ ବିଜ୍ଞାପିତ କରିଥିବା ନିୟମଗୁଡ଼ିକୁ ଶତପ୍ରତିଶତ ସୁହାଉ ନଥିଲା । ସେହି ମନୋନୟନପତ୍ର ଗୁଡିକରେ ଆବଶ୍ୟକୀୟ ତଥ୍ୟ ଓ ପ୍ରମାଣର ଅଭାବ ଥିଲା । ଏଣୁ ଗଣତାନ୍ତ୍ରିକ ଭୋଟ ବ୍ୟବସ୍ଥାର ନିୟମ ଅନୁଯାୟୀ ସେହି ମନୋନୟନ ପତ୍ରଗୁଡିକ ନାକଚ ହୋଇଯିବା କଥା । କିନ୍ତୁ ଯେହେତୁ ଏକାଡେମୀ କର୍ତ୍ତୃପକ୍ଷ ଭୋଟ ତାମସା ଘଟୁବୋଲି ଚାହୁଁଥିଲେ, ସେମାନେ ଚିଠି ଲେଖି ସଂପୃକ୍ତ ଶିଳ୍ପୀମାନଙ୍କ ଠାରୁ ଆବଶ୍ୟକୀୟ କାଗଜ ମଗେଇ ଆଣିଲେ । ଏମିତିରେ ଦେଖିବାକୁ ଗଲେ ଚିଠି ଲେଖି ଉଦାରତାର ଉଦାହରଣ ପ୍ରତିଷ୍ଠା କରିବା ଆବଶ୍ୟକ ନଥିଲା । ଏକାଡେମୀ ପାଖରେ ସବୁଶିଳ୍ପୀଙ୍କ ଜୀବନ ଓ କୃତି ସଂପର୍କରେ ତଥ୍ୟ ମହଜୁଦ ଥିଲା । ଚିଠି ଲେଖା ଚରମ ସାଧୁତାର ବାହାନା ମାତ୍ର । ନିୟମ ପାଳନର ବିମଳ ଦୃଷ୍ଟାନ୍ତ । ଏକାଡେମୀ ଗତବର୍ଷ ଶିଳ୍ପୀମାନଙ୍କ ଜୀବନୀ ସମ୍ବଳିତ ଯେଉଁ ଶିଳ୍ପୀ ପଞ୍ଜିକା ପ୍ରକାଶ କରିଛି ସେଥିରେ ସନ୍ନିବେଶିତ ତଥ୍ୟ କ'ଣ ଭୁଲ ? ନା ଏକାଡେମୀ ଶିଳ୍ପୀମାନଙ୍କ ଠାରୁ ସତ୍ୟପାଠ ଚାହୁଁଥିଲା ?

ମୁଁ ଏକାଡେମୀର ସଭାପତି ଥିଲାବେଳେ ଭୋଟର ତାଲିକାରେ ଶିଳ୍ପୀଙ୍କ ଠିକଣା ଭୁଲ ଥିବା କଥା ଦର୍ଶେଇ ନିର୍ବାଚନ ପ୍ରକ୍ରିୟାକୁ ବନ୍ଦ କରେଇଥିଲି । ଏ ଭିତରେ ଅନେକ ଦିନ ବିତିଯାଇଥିଲେ ମଧ ଭୋଟର ତାଲିକା ସଂଶୋଧନ କରାଯାଇ ନଥିଲା । ସେଥିରେ ମୃତଶିଳ୍ପୀମାନଙ୍କର ନାଁ ମଧ ଥିଲା । ଭୋଟ ପ୍ରଚାର ବେଳେ ଧର୍ମପଦ ପ୍ରାର୍ଥୀମାନେ ଏହି ଭୁଲ ଧରିପାରିଲେ ଏବଂ ଏହା ଫଳରେ ଗୁଡିଏ ଭୋଟକାଗଜ ବାଟ ମାରଣା ହେଲା । ମୁଁ ଭୋଟ ପ୍ରଚାର ସମୟରେ ମୋର ପ୍ରିୟ ଶିକ୍ଷକ ଅଧ୍ୟାପକ ଅନନ୍ତ ପଣ୍ଡାଙ୍କ ପାଖରେ ପହଞ୍ଚିଲି । ପଣ୍ଡା ସାର୍‌କୁ ତାଙ୍କ ଭୋଟ ମାଗିଲି । ସିଏ ସାମାନ୍ୟ ମୁରକି ହସା ଦେଲେ ଓ କହିଲେ ପାଠୀ ! ଧର୍ମପଦ ହେବାକୁ ତମକୁ ମଧ ଶେଷରେ ଏ ଦଶା

ଭୋଗିବାକୁ ପଡିଲା । ମୁଁ ଲଜ୍ଜାରେ ମୁଣ୍ଡ ପୋତିବା ଛଡ଼ା ଅନ୍ୟ ଗତି ନଥିଲା । ମୁଁ ଧର୍ମପଦ ହେଇସାରିଛି-ଏତକ କହିପାରିଲିନି ।

ଭୋଟରଙ୍କ ଠାରୁ ଭୋଟକାଗଜ ଗୁଡିକ ଏକାଡେମୀ ଅଫିସକୁ ଫେରିଲା । ସଂପାଦକ ମହାଶୟ ସେଗୁଡିକୁ ନିଜ ପକେଟରେ ପୁରେଇ ହେଣ୍ଡି ମାରି ଦୀର୍ଘ ଦୁଇମାସ ଯାଏଁ ବୁଲିଲେ । ଭୋଟ ଗଣତିର ନାଁ ନାହିଁ କି ଗାଁ ନାହିଁ । ସଂପାଦକଙ୍କ ପକେଟ ଭିତରେ ଭୋଟକାଗଜ ଗୁଡିକ ପ୍ୟୁପାରୁ ପ୍ରଜାପତି ଭଳି ଧଳାରୁ କଳା ହୋଇଗଲେ । କଳା ଏକାଡେମୀରେ ପ୍ରତ୍ୟେକଙ୍କ ଜୀବନର ଶେଷଲକ୍ଷ୍ୟ ହେଲା କଳାରେ ଲୀନ ହେବା । ଏ ମର୍ତ୍ତ୍ୟମଣ୍ଡଳରେ କିଏ ବା କାରିଗରପୁଅ ଅଛି ଯେ ସଂପାଦକଙ୍କ ମନମୁଖୀ କାର୍ଯ୍ୟକଳାପ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବ ? ସଂପାଦକଙ୍କ ଇଚ୍ଛାବିନା କଳାରାଜ୍ୟରେ ପତ୍ରଟିଏ ସୁଦ୍ଧା ହଲି ପାରେନା । କିଏ ଅର୍ଥରେ, କିଏ ଚାଟୁ ବଚନରେ, କିଏ ଧମକରେ ବା ଚମକରେ, କିଏ ପୁଣି ପଦଲେହନରେ, ପୁଣି କିଏ ଭବିଷ୍ୟତରେ ପୁରସ୍କାର ପାଇବାର ଆଶାରେ ମନ୍ତ୍ରମୁଗ୍ଧ ବିଷଦନ୍ତହୀନ ସର୍ପଭଳି ଶାନ୍ତ ହେଇ ଯାଇଥିଲେ । ସଂପାଦକ ନିଜ ନିରପେକ୍ଷତା ଓ ସଚ୍ଚୋଟତାର ନଜିର ଦେଖେଇ ତାଙ୍କର ଅଖଣ୍ଡ କ୍ଷମତା ବଳରେ ବହୁ ଭୋଟ କାଗଜ ଗୁଡିକୁ ଗଣତି ପାଇଁ ଗ୍ରହଣ ସୁଦ୍ଧା କରି ନଥିଲେ । ଆହା ସାଧୁତାର କି ଅକାଟ୍ୟ ପ୍ରମାଣ । ସଂପାଦକ ଆସ୍ଫାଳନ କରି କହୁଥିଲେ ଯେ ସେ ସରକାରୀ ଚାକିରୀରୁ ବିଦାୟ ନେଲାପରେ ମଧ୍ୟ ସଂପାଦକ ଓ ସଭାପତି ପଦରେ ଆଉ ଅନ୍ତତଃ ସାତ ଆଠ ବର୍ଷ ରାଜୁତି କରିବେ । ଏଣୁ ଏ କଳାର ଅପାର ସଂସାରରେ ହରିଙ୍କ ବିନା ଆଉ ଗତି ମୁକ୍ତି ନାହିଁ । ସଂପାଦକ ଦିନକୁ ରାତି ବୋଲି ଅଭିହିତ କରୁଥିଲେ ମଧ୍ୟ ଦଳେ ଚାଟୁକାର, ମେରୁଦଣ୍ଡ ବିହୀନ ଶିଳ୍ପୀ ଅତି ଲଜ୍ଜାହୀନ ଭାବେ ଏଣୁଅ ସ୍ୱଗତୋକ୍ତି କଲା ଭଳି ମୁଣ୍ଡ ଟୁଙ୍ଗାରୁ ଥିଲେ । ବିଜୟ ମିଶ୍ରଙ୍କ 'ଜଣେ ରାଜା ଥିଲେ' ନାଟକର ନର-ଉଷ୍ଟ୍ର ସଂଗୀତ ସେତେବେଳେ କାନରେ ପ୍ରତିଧ୍ୱନିତ ହୋଇଯାଉଥିଲା ।

ଓଟ ପରି ଜୀବ ନାହିଁରେ ଭାଇ, ଶାନ୍ତି ତୁ ପାଇବୁ ଯା ଓଟ ହେଇ ।
ପିଠିରେ କୁଜଟା କି ମନୋହର, ତୋ ନିରୀହ ଆଖି ଭାରି ସୁନ୍ଦର ।
କଣ୍ଟା ଝଣ୍ଟା ସିଜୁ ଯା ଖାଇଯା, ତତଲା ବାଲିରେ ଯା' ଶୋଇଯା ।
ଓଟ ପରି ଜୀବ ନାହିଁ ରେ ଭାଇ, କହେ ରାଜା ସୁର ଯା' ଓଟ ହେଇ ।

ଅବଶ୍ୟ ଗୋଟିଏ ବୃହତ୍ତର ପରିପ୍ରେକ୍ଷୀରୁ ଦେଖିଲେ ଜଣାପଡିବ, ପ୍ରତ୍ୟେକ ପୁରସ୍କାର ସହିତ ଗୋଟିଏ ଚୟନ ପ୍ରକ୍ରିୟା ସଂପୃକ୍ତ । ଏହି ପ୍ରକ୍ରିୟାକୁ ଜଣେ ବ୍ୟକ୍ତି ବିଶେଷ ବା ଗୋଟିଏ ଗୋଷ୍ଠୀ, ସମିତି ବା ମଣ୍ଡଳୀ ସଂପାଦନ କରିଥାନ୍ତି । ସାହିତ୍ୟ ଏକାଡେମୀ ଓ ସଂଗୀତ ନାଟକ ଏକାଡେମୀମାନଙ୍କର ସାଧାରଣ ପରିଷଦ ବା ବେଳେବେଳେ କାର୍ଯ୍ୟକାରୀ ସମିତି ଏ ଚୟନ କାର୍ଯ୍ୟ ସଂପାଦନା କରୁଥିବାବେଳେ, ଲଳିତକଳା ଏକାଡେମୀ ନିଜ ପାରିଷଦମାନଙ୍କ ଦ୍ୱାରା ଏ କାର୍ଯ୍ୟ କରେ

ଚୟନ ନିରପେକ୍ଷ ହେବାର ସମ୍ଭାବନା କମ୍ ଥିବାରୁ ଏକ ବୃହତ୍ତର ଶିଳ୍ପୀ ଗୋଷ୍ଠୀ ଦ୍ୱାରା କରାଇବାର ନିଷ୍ପତ୍ତି ନେଇଛନ୍ତି । ଏଭଳି କରିବାର ଅନ୍ୟ ମୁଖ୍ୟ କାରଣ ହେଲା ଭୋଟ ସୁଆଙ୍ଗର ମଜା ନେବା, ଚନ୍ଦା ମୁଣ୍ଡରେ ଧଳାବାଳ ପୁଞ୍ଜାଏ ଝୁଲେଇ ବୃଦ୍ଧ ଶିଳ୍ପୀମାନେ କିଭଳି ହରକତ ହେଉଛନ୍ତି ତାହା ଦେଖିବା । ଗଣତନ୍ତ୍ର ପଦ୍ଧତି ଠାରୁ ବଳି ଉଦାର ନିର୍ବାଚନୀୟ ଉଦାହରଣ କ'ଣ ବା ହେଇପାରେ ?

ଏଥରର ପ୍ରାର୍ଥୀ ମନୋନୟନ ଓ ଚୟନ ପ୍ରକ୍ରିୟାକୁ ନେଇ ବହୁ ଅଭିଯୋଗ ଖବର କାଗଜମାନଙ୍କରେ ମାସାଧିକ କାଳ ପ୍ରକାଶିତ ହୋଇଛି । ଦୂରଦର୍ଶନରେ ମଧ୍ୟ ତାହା ବାରମ୍ବାର ପ୍ରସାରିତ ହେଇଛି । ଅଭିଯୋଗର କାଠଗଡ଼ାରେ ଛିଡ଼ା ହୋଇ ସଂସ୍କୃତିମନ୍ତ୍ରୀଙ୍କୁ ମଧ୍ୟ ଜବାବ-ସୁଆଲ କରିବାକୁ ପଡିଛି । ଏଭଳି ଏତେ ବିବାଦ ଆଗରୁ ଓଡ଼ିଶାରେ ଲଳିତକଳା କ୍ଷେତ୍ରରେ କେବେ ଦେଖାଯାଇନଥିଲା । ମନେହେଲା ଗୋଟିଏ ପଟେ ରାମଲିଙ୍ଗ ରାଜୁଙ୍କ ସତ୍ୟମ୍ ସ୍କାମ ଏବଂ ଅପରପଟେ ଓଡ଼ିଶାରେ ଧର୍ମପଦ ୦୮ ଘୋଟାଲା । ଅବଶ୍ୟ ଭୋଟ ରାଜନୀତିରେ ଏଭଳି ବିବାଦ, ଅପବାଦ ଅତି ସାଧାରଣ ଘଟଣା । ଏଥିରେ ଅସାଧାରଣର ଲେଶ ମାତ୍ର ନାହିଁ । ଏସବୁ ଅବ୍ୟବସ୍ଥା ପ୍ରତି ଜନସଚେତନତାର ପ୍ରଭାବ କିଭଳି ଏକାଡେମୀ ଉପରେ ପଡିଛି ତାହା ସମୟ କହିବ ।

ମୋର ମନେହୁଏ ରାଜନୀତି ଯେହେତୁ ଶ୍ରେଷ୍ଠନୀତି ବା ରାଜାଙ୍କର ମଧ୍ୟ ନୀତି, ଆଉ ଲୁଚାଛପାରେ, ଧର୍ମପଦ ପୁରସ୍କାର ପାଇଁ ମନୋନୟନ ପତ୍ର ଦାଖଲ, ଭୋଟପ୍ରଚାର, ଭୋଟଗ୍ରହଣ, ଭୋଟଗଣତି ଇତ୍ୟାଦି ନ ହେଇ ଏ କାର୍ଯ୍ୟକୁ ଖୋଲାଖୋଲି ଓ ବିଧି ସମ୍ମତ ଭାବରେ କରାଯାଉ ଏବଂ ଧର୍ମପଦ ପୁରସ୍କାର ପାଇବା ପାଇଁ ଇଚ୍ଛୁକ ପ୍ରାର୍ଥୀମାନଙ୍କୁ ବିଭିନ୍ନ ରାଜନୈତିକ ଦଳର ପ୍ରାର୍ଥୀ ଭାବେ ବିଚାର କଲେ କିଭଳି ହୁଅନ୍ତା ? ଲାଗୁଛି ଚୟନ ପ୍ରକ୍ରିୟା ଜମନ୍ତା । ଜମିଲେ ତ ହେଲା ।

ନିର୍ବାଚନରେ ପ୍ରାର୍ଥୀ ହେବା, ନିର୍ବାଚନ ଲଢ଼ିବା ଓ ଜୟଯୁକ୍ତ ହେବା ମୋ ପାଇଁ ନୂଆ ନୁହେଁ । ଅତି ଆଚମ୍ବିତ ଲାଗେ ଦୀର୍ଘ କୋଡିଏ ବର୍ଷ ତଳେ ପ୍ରତିଦ୍ୱନ୍ଦ୍ୱିତା କରିଥିବା ଏଭଳି ଏକ ନିର୍ବାଚନ ମଧ୍ୟ ଲଳିତକଳା ଏକାଡେମୀର ହିଁ ଥିଲା । ଅବଶ୍ୟ ରାଜ୍ୟର ନୁହେଁ କେନ୍ଦ୍ରର, ପୁଣି ପୁରସ୍କାର ପାଇଁ ନୁହେଁ ସଭ୍ୟପଦ ପାଇଁ । ମୋ ବିରୁଦ୍ଧରେ ମୋର ଅତିପ୍ରିୟ ଅଧ୍ୟାପକ ଅନନ୍ତ ପଣ୍ଡା ସେତେବେଳେ ନିର୍ବାଚନ ଲଢୁଥିଲେ ଏବଂ ମୁଁ ଗୋଟିଏ ଗୋଷ୍ଠୀକୁ ପ୍ରତିନିଧିତ୍ୱ କରୁଥିଲି । ସର୍ବଭାରତୀୟ ସ୍ତରରେ ଶିଳ୍ପୀମାନେ ଦୁଇ, ତିନୋଟି ଗୋଷ୍ଠୀରେ ବିଭକ୍ତ ହେଇସାରିଥିଲେ । ମୁଁ ଗୋଟିଏ ଶକ୍ତିଶାଳୀ ଶିଳ୍ପୀଗୋଷ୍ଠୀର ପ୍ରତିନିଧିତ୍ୱ କରୁଥିବାରୁ ନିର୍ବାଚନରେ ଜୟଯୁକ୍ତ ହୋଇଥିଲି । କିନ୍ତୁ ଏକାଡେମୀ ଦ୍ୱାରା ପରିଚାଳିତ ଏଭଳି ନିର୍ବାଚନମାନଙ୍କରେ ବ୍ୟାପକ ଦୁର୍ନୀତି ହେଉଥିବାର ନଜିର ଦେଖେଇ ସ୍ୱୟଂ କେନ୍ଦ୍ର ଲଳିତକଳା ଏକାଡେମୀ ସ୍ୱଚ୍ଛ ନିର୍ବାଚନ ଅନୁଷ୍ଠିତ କରେଇବା ପାଇଁ ଦେଶର ଜାତୀୟ ନିର୍ବାଚନ କମିଶନଙ୍କ ହାତରେ ଦାୟିତ୍ୱ ସମର୍ପି ଦେଲେ । କମିଶନଙ୍କ କର୍ମକର୍ତ୍ତାମାନେ ସାଙ୍ଗରେ ଭୋଟବାକ୍ସ ଧରି ଉଡାଜାହାଜରେ ବିଭିନ୍ନ ସହରରେ ପହଞ୍ଚିଲେ । ବିଭିନ୍ନ ରାଜ୍ୟର ଆଇ.ଏ.ଏସ୍. ସଂସ୍କୃତି ସଚିବମାନେ

ରିଟର୍ଣିଂ ଅଫିସର ଭୂମିକାରେ କାର୍ଯ୍ୟ ନିର୍ବାହ କଲେ । ତା'ପରେ ସରକାରୀ ନିର୍ବାଚନମାନଙ୍କରେ ଯିମିତି ସବୁ ଘଟେ ସେପରି ଘଟିଲା । ବିଗତ କେନ୍ଦ୍ର ଲଳିତ କଳା ଏକାଡେମୀ ନିର୍ବାଚନରେ ନଅଜଣ ସଭ୍ୟଙ୍କୁ ନିର୍ବାଚିତ କରିବା ପାଇଁ ଏକାଡେମୀର ସତୁରି, ପଞ୍ଚସ୍ତରି ଲକ୍ଷ ଟଙ୍କା ଖର୍ଚ୍ଚ ହେଲା । ଆଉ ସେହି ପଦ୍ଧତିରେ ଯେଉଁମାନେ ନିର୍ବାଚିତ ହୋଇ ଆସିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଶିଳ୍ପୀ ଥିଲେ ଅନାମଧେୟ । ଏକାଡେମୀର ଅଧ୍ୟକ୍ଷଙ୍କ ଭାଷାରେ 'ଶଶୁରା ଏ ସବ୍ ହେ କୌନ୍' ।

ସାହିତ୍ୟ ଓ ଲଳିତକଳା କ୍ଷେତ୍ରରେ ସଭ୍ୟ ମନୋନୟନ ପାଇଁ ହେଉ ବା ପୁରସ୍କାର ପାଇଁ ହେଉ ନିର୍ବାଚନ ଏକ ସୁଗମ ପନ୍ଥା ନୁହେଁ । କିନ୍ତୁ ଦଳେ କହିବେ ଗଣତନ୍ତ୍ର ରାଷ୍ଟ୍ରରେ ନିର୍ବାଚନ ଛଡା ଅନ୍ୟ ପନ୍ଥା ନାହିଁ । କିଛି ଚଗଲା ମାଛଙ୍କୁ ଗୋଳିଆ ପାଣି ବେଶ୍ ସୁହାଏ । ଗୋଳମାଳ କରି ସହଜରେ ଖସିଯିବାର ସମ୍ଭାବନାଟିଏ ଥାଏ ।

ଗତବର୍ଷର ଧର୍ମପଦ ପୁରସ୍କାର ପାଇଁ ରାଜ୍ୟ ଲଳିତକଳା ଏକାଡେମୀ ଦ୍ୱାରା ଅନୁଷ୍ଠିତ ନିର୍ବାଚନରେ ଶିଳ୍ପୀମାନେ ବସ୍ତୁତଃ ପାରମ୍ପରିକ ଓ ଆଧୁନିକ, ଦୁଇଟି ଗୋଷ୍ଠୀରେ ବିଭକ୍ତ ହୋଇଥିଲେ । ଏଭଳି ନିର୍ବାଚନମାନ ଯଦି ଭବିଷ୍ୟତରେ ଅନୁଷ୍ଠିତ ହୁଏ ତାହେଲେ ପାରମ୍ପରିକ, ଆଧୁନିକ, ଉତ୍ତର ଆଧୁନିକ, ସାଂପ୍ରତିକ ଓ ଶେଷରେ ଖଲ୍ଲିକୋଟ, ବିଭୂତି କାନୁନ୍‌ଗୋ, ଜୟପୁର, ଧଉଳି, ବାଲେଶ୍ୱର ଓ ଭଦ୍ରକ ପ୍ରଭୃତି ମହାବିଦ୍ୟାଳୟମାନଙ୍କ ଦ୍ୱାରା ସମର୍ଥିତ ସ୍ୱତନ୍ତ୍ର ଗୋଷ୍ଠୀମାନ ଗଠିତ ହୋଇ ଏହି ଗୋଷ୍ଠୀମାନଙ୍କ ତରଫରୁ ଶିଳ୍ପୀମାନେ ରଣାଙ୍ଗନରେ ଅବତୀର୍ଣ୍ଣ ହେବାର ମଧ୍ୟ ସମ୍ଭାବନା ଦେଖାଦେବ । ଏଇ ଥରକର ନିର୍ବାଚନରେ ମଧ୍ୟ ପଶ୍ଚିମ ଓଡ଼ିଶା, ଉପକୂଳ ଓଡ଼ିଶା ଓ ଦକ୍ଷିଣ ଓଡ଼ିଶା ମର୍ମରେ ପ୍ରାର୍ଥୀ ଦିଆଯାଉ ବୋଲି ସମ୍ବାଦପତ୍ର ଜରିଆରେ କଥା ଉଠିଥିଲା । ଆଞ୍ଚଳିକ ଭିତ୍ତିରେ ତିନୋଟି ପ୍ରାର୍ଥୀ ମନୋନୟନ କରାଯାଇଥିଲେ ମୁଁ ଦକ୍ଷିଣ ଓଡ଼ିଶାରୁ, ପୂର୍ଣ୍ଣଚନ୍ଦ୍ର ପ୍ରଧାନ ଉତ୍ତର ବା ମଧ୍ୟ ଓଡ଼ିଶାରୁ, ଗୋକୁଳି ବିହାରୀ ପଟ୍ଟନାୟକ ବା ଜଗଦୀଶ କାନୁନ୍‌ଗୋଙ୍କ ମଧ୍ୟରୁ କିଏ ଜଣେ ଉପକୂଳ ଓଡ଼ିଶାରୁ ପ୍ରାର୍ଥୀ ହୋଇଥାନ୍ତେ ।

ଲଳିତକଳା ଏକାଡେମୀ ଯେଉଁ ଧର୍ମପଦଙ୍କ ଅମର ସ୍ମୃତିର ରକ୍ଷା ପାଇଁ ଏ ପୁରସ୍କାର ପ୍ରଚଳନ କରିଛନ୍ତି, ସେ କେଉଁ ଅଞ୍ଚଳର; ଦକ୍ଷିଣର ନା ପଶ୍ଚିମର ଏବଂ କେଉଁ ପରମ୍ପରାର; ଆଧୁନିକର ନା ପୁରାତନର ତାହା ପ୍ରଥମେ ନିର୍ଧାର୍ଯ୍ୟ କରାଯାଉ । ଏକାଡେମୀ ଏବଂ ଏକାଡେମୀକୁ ପରିଚାଳନା କରୁଥିବା ସରକାର ଧର୍ମପଦ ପୁରସ୍କାର ପାଇଁ ଅନ୍ତତଃ କୋଟିଏ ଟଙ୍କାର ଧନରାଶି ବ୍ୟବସ୍ଥା କରନ୍ତୁ ଆଉ ପ୍ରାର୍ଥୀମାନଙ୍କୁ 'ଜେଡ୍' ନିରାପତ୍ତା ଦେଇ ନିର୍ବାଚନ ରଣାଙ୍ଗନକୁ ଛାଡି ଦିଅନ୍ତୁ । କେବଳ ଓଡ଼ିଆ ଲୋକେ କାହିଁକି ସମଗ୍ର ଦେଶ ଦେଖିବ ଓଡ଼ିଆ ଶିଳ୍ପୀ କେତେ ବୀର ଆଉ ପାରିବାର ।

ଉପନ୍ୟାସଟି ଧର୍ମପଦ ପ୍ରାର୍ଥୀ ଭାବେ ମୋ ବିଚିତ୍ର ଅନୁଭବର କାବ୍ୟରୂପ । କ୍ଷୋଭ ଓ ବିଷାଦର ବଳୟ ମଧ୍ୟରୁ ଏହାର ଜନ୍ମ । ସାହିତ୍ୟ ଦୃଷ୍ଟିରୁ ବିଚାରକଲେ ଏହା ସବୁ ଉପନ୍ୟାସ ଭଳି

କାଳ୍ପନିକ ଏବଂ ଚରିତ୍ରମାନେ ବାସ୍ତବ ଓ ଅବାସ୍ତବ ଭାବନାରୁ ସୃଷ୍ଟ କୁହୁଡି ଆଚ୍ଛାଦିତ ମେଘ ଭଳି ବର୍ଣ୍ଣିଳ ଓ ଉପଭୋଗ୍ୟ । ନାମର ସାମଞ୍ଜସ୍ୟ ବେଳେବେଳେ ଆକସ୍ମିକତା, ଅଘଟଣ, ଦୁର୍ଘଟଣା କିନ୍ତୁ ଉଦ୍ଦେଶ୍ୟ ପ୍ରଣୋଦିତ ନୁହେଁ ।

ଏହି ଉପନ୍ୟାସର ଅନ୍ୟ ଏକ ଉଦ୍ଦେଶ୍ୟ ହେଲା ଧର୍ମପଦର ଦେଉଳ ମୁଣ୍ଡିମାରିବା ଓ ଦେଉଳ ଉପରୁ ଡେଇଁ ଆତ୍ମହତ୍ୟା କରିବାର ଐତିହାସିକ ସମ୍ମତି ଯୋଗାଡ଼ କରିବା ଏବଂ ଆତ୍ମହତ୍ୟାର କାରଣ ଯେହେତୁ ଦଳେ ପାରମ୍ପରିକ ଶିଳ୍ପୀ ଗୋଷ୍ଠୀ; ଯେଉଁମାନେ କୋଣାର୍କର ସୂର୍ଯ୍ୟରଥ ଭଳି ଏକ ବିଶ୍ୱବନ୍ଦିତ କୀର୍ତ୍ତି ଗଢ଼ିଥିଲେ; ତେଣୁ ତା'ର ବୈଧତା ପ୍ରତିପାଦନ କରି କୁଳ ନିନ୍ଦାରୁ ମୁକୁଳିବାର ଚେଷ୍ଟା, ପୁଣି ଓଡ଼ିଆ ଶିଳ୍ପ ପରମ୍ପରାର ଦାୟାଦ ହିସାବରେ ଏଭଳି ଏକ ଅସତ୍ୟ ଘଟଣା ଉପରେ ପର୍ଯ୍ୟବସିତ ପୁରସ୍କାରର ଆନୁଷ୍ଠାନିକ ଓ ସାମାଜିକ ସ୍ୱୀକୃତି ନୀତିଗତ ଭାବେ କେତେଦୂର ଗ୍ରହଣୀୟ ତାକୁ ହେଜିବା । ଯେକୌଣସି ମହତ୍ କର୍ମାନୁଷ୍ଠାନ ପାଇଁ ସାଧିବାର ମାର୍ଗ ନୀତିସଂପନ୍ନ ହେବା ବିଧେୟ । ଅନ୍ୟଥା ଉତ୍ସ କଳୁଷିତ ହେଲେ ତାର ପ୍ରାପ୍ତି ମଧ୍ୟ ଦୋଷଯୁକ୍ତ ହେବ ।

ତିଳ ସପ୍ତମୀ<br>୨ ଫେବୃଆରୀ ୨୦୦୯

ଦିନନାଥ ପାଠୀ

ରାତି ପାହିଲେ ରବିବାର । ମାଘଶୁକ୍ଳ ସପ୍ତମୀ । ସୂର୍ଯ୍ୟ ମନ୍ଦିରର ଅଧିଷ୍ଠାତ୍ରୀ ଦେବତା ମହାଭାସ୍କରଙ୍କ ଜନ୍ମୋତ୍ସବ । ଉଦୟସୂର୍ଯ୍ୟଙ୍କ ପ୍ରଥମ କିରଣ କଳାମୁଗୁନି ପଥରରେ ଖୋଦିତ ଓ ଗର୍ଭଗୃହର ରତ୍ନସିଂହାସନରେ ଉପବିଷ୍ଟ ମହାଭାସ୍କରଙ୍କ ପାଦପଦ୍ମ ସ୍ପର୍ଶ କଲାକ୍ଷଣି ମଙ୍ଗଳ ଆଳତି ବଢ଼ିବ । ଧୂପ, ଦୀପ, ଅଗୁରୁ, ଚନ୍ଦନର ମହକରେ ଗର୍ଭଗୃହ ବାସିଉଠିବ । ଏହା ହେବ ମନ୍ଦିରର ପ୍ରଥମ ଆଳତି । ମନ୍ଦିର ପ୍ରତିଷ୍ଠା ଉତ୍ସବର ଏହା ହେବ ଅନୁକୂଳ ବିଧି । ସୂର୍ଯ୍ୟମନ୍ଦିର ବେଢ଼ାର ବାଲି ଶେଯ ଉପରେ ଶିଳ୍ପୀମାନେ ଏକଜୁଟ ହେଇଛନ୍ତି । ଲାଗୁଛି କଳିଙ୍ଗ ଶିଳ୍ପୀ ମହାସଂଘର ଏହା କୁଳସଭା । ରାତି ଧୀରେ ଧୀରେ ଗହିରିଆ ହେଉଛି । ଅଦୂରରେ ମହୋଦଧିର ଅବିରାମ ଗର୍ଜନ ନିକାଞ୍ଚନ ବେଳାଭୂମିକୁ ଶଙ୍କାକୁଳ କରିଦେଉଛି । ଆଜି ଆଉ ନିହାଣମୂନର ପଥର ସଂଗୀତ ଶୁଭୁନାହିଁ । ଲାଗୁଛି ସଂଗୀତ ଏବେ ରୂପବାନ ହେଇ ମନ୍ଦିର ଗାତ୍ରରେ ଶୋଭାପାଉଛି । ଚିତ୍ର ଓ ଭାସ୍କର୍ଯ୍ୟର ସଂଗୀତ ଅନାହତ ସଂଗୀତ । ବାରଶ' ବଢ଼େଇଙ୍କ ଦୀର୍ଘ ବାରବର୍ଷର ଶିଳ୍ପସାଧନାର ମହନୀୟ କୀର୍ତ୍ତି ଏହି ସୂର୍ଯ୍ୟମନ୍ଦିର । କୁଳପରମ୍ପରା, ଐତିହ୍ୟ ଓ ଉତ୍‌କର୍ଷର ଭବ୍ୟ ଉଦାହରଣ ଏହି ସୂର୍ଯ୍ୟଦେଉଳ; ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ ସମସ୍ତ ଶୈଳ୍ପିକ କଳ୍ପନାର ଶ୍ରେୟ । ଏଠି ପଥରମାନେ ପାଷାଣୀ ଋଷି ଗୌତମଙ୍କ ଶାପରୁ ଅହଲ୍ୟା ମୁକ୍ତି ପାଇଲା ଭଳି ପ୍ରାଣ ପାଇ ଜୀବନ୍ତ ହୋଇଯାଇଛନ୍ତି । କିନ୍ତୁ ରାମଚନ୍ଦ୍ରଙ୍କ ପଦସ୍ପର୍ଶରେ ନୁହେଁ, କୁଶଳୀ କାରିଗରଙ୍କ ନିହାଣର ଚୁମ୍ବନରେ । ଷଷ୍ଠିଜହ୍ନ ମଉଳିବାକୁ ବସିଲାଣି । ଝାଉଁବଣରୁ ପୁଳାପୁଳା ଶୀତଳ ପବନ ବାଲିଶେଯ ଉପର ଦେଇ ବହିଯାଉଛି ଓ ଦେହ ଥରେଇ ଦେଉଛି । ଏହି ଶୀତଳ ଅନ୍ଧାର ଭିତରେ ଆଧିଭୌତିକ ସ୍ଥିତିଭଳି ବିଶାଳ ମନ୍ଦିର, ମାଟି ଓ ଆକାଶକୁ ଏକାକାର କରି ଠିଆ ହେଇଛି । ଉତ୍ସବ ମୁଖର ଆବାହନୀର ପୂର୍ବରାଗରେ କେଉଁଠି ଛପିରହିଛି ଗୋଟିଏ ବେସୁରା ସଂଗୀତର ସ୍ୱର । ଉତ୍ସବର ସ୍ୱାଭାବିକ ଉଦ୍ଦାମ ମୁହୂର୍ତ୍ତମାନଙ୍କରେ ଉଚ୍ଚାଟର ହତାଶା ଓ ଅସହାୟତା ।

ଆଣ୍ଠୁ କୁଞ୍ଚେଇ, ମେରୁଦଣ୍ଡ ବଙ୍କେଇ, ଆଣ୍ଠୁଉପରେ ମୁଣ୍ଡଭରା ଦେଇ ପଥର କାରିଗର ଦଳକ ଗୃଧ୍ରପକ୍ଷୀ ଶବକୁ ଘେରିଥିଲାଭଳି ମନ୍ଦିର ବେଢ଼ାକୁ ଆବୋରି ବସିଛନ୍ତି । ଖାଲି ହତାଶା, କ୍ଷୋଭ ଓ ଆକ୍ରୋଶର ଅଣଚାଶ ତତଲାପବନ ସହସ୍ର ଦୀପଶିଖାର ନିର୍ବାପିତ ଧୂଆଁଭଳି ସେମାନଙ୍କ ମୁଣ୍ଡ ଉପରେ କୁଣ୍ଡଳୀ କାଟୁଛି । ଚାରି ଦିଗେ ଅସ୍ୱାଭାବିକ **ନୀରବତା** ।

ନୀରବତା ଭଙ୍ଗକରି କିଏ ଜଣେ କାରିଗର ବସିବା ଜାଗାରୁ ହଠାତ୍ ଉଠିପଡି କଠୋର କଣ୍ଠରେ ପଚାରିଲା, ସଦାଶିବ ହେଜିପାରୁଛ ! ଏ କଳିଙ୍ଗ ଶିଳ୍ପୀକୂଳର ଦୈନ୍ୟ । ସମସ୍ତେ ଅସହାୟ ଓ ଅସାମର୍ଥ୍ୟ । ଘୋର ଲଜ୍ଜା ଓ ଅପମାନର କାଳିମା ଏ ଶିଳ୍ପୀକୂଳର ଗରିମାକୁ ଧୂଳିସାତ୍ କରିଦେଇଛି । ସଦାଶିବ ! ତମେ ନିଶ୍ଚୟ ହୃଦୟଙ୍ଗମ କରିପାରୁଥିବ ଏ ଶିଳ୍ପୀଙ୍କ ଅନ୍ତରର ବ୍ୟଥା ଓ ତମପାଖରେ ତାଙ୍କ ଆକୁଳ ନିବେଦନର କାରଣ । ନିବେଦନ ଭାବ, ଦାବି ମନେକର ବା ଆଦେଶ କିମ୍ବା କର୍ତ୍ତବ୍ୟ ଧରିନିଅ, ତମକୁ ଯଥାଶୀଘ୍ର ନିଷ୍ପତ୍ତି ନେବାକୁ ହେବ । ଆମ ହାତରେ ଆଉ ବେଳନାହିଁ । ରାତି ପାହିଲାବେଳକୁ ଦେଉଳର ମୁଣ୍ଡିମରା ହେଇ ନପାରିଲେ ବାରଶ' ବଢ଼େଇଙ୍କ ମୁଣ୍ଡ କାଟ ହେବ । ଏହା ସମ୍ରାଟଙ୍କ ଆଦେଶ, ଅଲଂଘ୍ୟ, ଶିରୋଧାର୍ଯ୍ୟ । ଏ ବର୍ଷ ମାଘ ଶୁକ୍ଳ ସପ୍ତମୀ ଓ ରବିବାର ଏକାଦିନରେ ପଡୁଥିବାରୁ ସମ୍ରାଟ ପ୍ରତିଷ୍ଠାବିଧି ବଢ଼େଇ ଦେବାପାଇଁ ଚାହୁଁଛନ୍ତି । ପରିସ୍ଥିତି ଓ ପରିବେଶ ଶିଳ୍ପୀକୂଳ ପାଇଁ ଅନୁକୂଳ ନୁହେଁ ।

ସଦାଶିବଙ୍କ ସମଗ୍ର ସ୍ଥିତିରେ ଉଚ୍ଚାରିତ ବାକ୍ୟଗୁଡିକ ଅଗ୍ନିବାଣ ଭଳି ଭେଦିଗଲା ଏବଂ ତାଙ୍କ ଦେହ, ମନ ଓ ପ୍ରାଣକୁ ଦହିବାକୁ ଲାଗିଲା । ଅସହ୍ୟ ସେ ଯନ୍ତ୍ରଣା । ଦୀର୍ଘ ବାରବର୍ଷ ଧରି ତ୍ୟାଗ ଓ ଉତ୍କର୍ଷର ସେ ଯେଉଁ ମହନୀୟତା ପ୍ରଦର୍ଶନ କରିଥିଲେ, ପରାକାଷ୍ଠାର ଯେଉଁ ଆଦର୍ଶ ବାଢ଼ିଥିଲେ, ତା'ର ପରିଣତି କ'ଣ ଏଭଳି ଅମାନୁଷିକ ଓ ଯନ୍ତ୍ରଣାଦଗ୍ଧ ହେଇପାରେ ? ସଦାଶିବ ନିଜ କର୍ତ୍ତବ୍ୟ ସ୍ଥିର କରିପାରୁନାହାନ୍ତି । ତାଙ୍କ ସ୍ନେହ କାଙ୍ଗାଳ ପିତୃତ୍ୱ ଏକ ଆସନ୍ନ ଘୂର୍ଣ୍ଣି ଭିତରେ ହଜିଯିବ ମନେହେଉଛି ।

କୂଳସଭା ଲାଗୁଛି ଦୀର୍ଘ ବାରବର୍ଷ ଧରି ସଞ୍ଚିତ କ୍ରୋଧର ଉଦ୍‌ଗୀରଣ । ଲାଗୁଛି ଘଟଣାକ୍ରମର ଏକ ସ୍ୱାଭାବିକ ସ୍ଫୁରଣ ଭଳି । ମନ୍ଦିର ନିର୍ମାଣ ବେଳର ବିଭିନ୍ନ ସମସ୍ୟାକୁ କେନ୍ଦ୍ରକରି ଗଢ଼ିଉଠିଥିବା ବିଗତଦିନର ପ୍ରତ୍ୟେକଟି ବିବେକାନୁମୋଦିତ ପରାମର୍ଶ ଓ ଅନୁପ୍ରେରଣା ଏବେ ପରିପ୍ରେକ୍ଷୀରୁ କକ୍ଷଚ୍ୟୁତ ହେଇଯାଇ ବ୍ୟକ୍ତିଗତ ଆକ୍ରୋଶ, ଅଭିଯୋଗ ଓ ଆକ୍ରମଣରେ ରୂପାନ୍ତରିତ ହେଇଯାଇଛି ଏବଂ ସଦାଶିବଙ୍କୁ ହିଁ ଭେଦୁଚି । ସଭାମଣ୍ଡଳୀର ଅନ୍ୟଗୋଟିଏ କୋଣରୁ ଆଗଭଳି ଆଉ ଏକ ରୁକ୍ଷକଣ୍ଠର ତାଡ଼ନା ଅବ୍ୟବସ୍ଥିତ ଅବସ୍ଥାରେ ଥିବା ସଦାଶିବଙ୍କୁ ଅକଥନୀୟ ବିଷାଦରେ ଘାରିଦେଲା ।

ସଦାଶିବ ! ତମେ ଯଥାଶୀଘ୍ର ନିଷ୍ପତ୍ତି ନିଅ । ତମେ ବାରଶ' ବଢ଼େଇରେ ଦାୟ ନା ତମ ପୁଅରେ ଦାୟ ? କୋଣାର୍କ ବେଢ଼ାର ବିସନ୍ନ ନୀରବତା ଭିତରେ ଏଇ କଥା କେଇପଦ ଭବିତବ୍ୟର କ୍ରୂର ଅଟ୍ଟହାସ ଭଳି ମନେହେଲା । ବେଢ଼ାକଣରେ ଥିବା ଘଞ୍ଚ ଆମ୍ରବୀଥି ମଧ୍ୟରୁ ଚାରିପାଞ୍ଚ ଉଲ୍ଲୁକ ହୁଟ୍ ହୁଟ୍ କରି ଏ ଡ଼ାଳରୁ ସେ ଡ଼ାଳକୁ ଉଡ଼ିବାରେ ଲାଗିଲେ । ଦଳେ କୋକିଶିଆଳ ଊର୍ଦ୍ଧ୍ୱମୁଖ ହେଇ ଏକ ସ୍ୱରରେ ଭୁକିଲେ । ପରିବେଶ ଆହୁରି ଭୟାତୁର

ମନେହେଲା । ଉତ୍ତର ବେଢ଼ାର ପଣସଗଛ ଗହଳି ମଧ୍ୟରୁ ବୁଢ଼ା ହନୁଟିଏ ହୁଙ୍କାର ଦେଲା । ତାପରେ ଆକ୍ରମଣ ଓ ପ୍ରତିଆକ୍ରମଣର ପ୍ରତି ହୁଙ୍କାର ଆଉ, ଖିଙ୍କାରରେ ପଣସଗଛର ଶାଖା ପ୍ରଶାଖା ଆନ୍ଦୋଳିତ ହେଲା । କିଛିକ୍ଷଣ ପରେ ତଳେ କ'ଣ ଗୋଟିଏ ଲଥ୍ କରି କଚାଡି ହେଇ ପଡିଯିବାର ଶବ୍ଦ । ବୋଧହୁଏ ବୁଢ଼ାହନୁମାନେ ମେଳିକରି ଛୁଆମାଙ୍କଡ଼ ବଙ୍କଟେକୁ ଜୀବନରେ ମାରିଦେଇ ତଳକୁ ଫିଙ୍ଗିଦେଲେ । କୋଣାର୍କ ପଡ଼ାର ଶେଷମୁଣ୍ଡରୁ ଦଳେ ବୁଲାକୁକୁର ସମବେଦନା ପ୍ରକାଶ କଲାଭଳି ଭୋଭୋ ଭୁକି ବେଢ଼ାଆଡ଼କୁ ତୁହାଟାରେ ଖେଦିଆସିଲେ । ତାଙ୍କ ଅନିଚ୍ଛାସତ୍ତ୍ୱେ ସମଗ୍ର ଘଟଣାଟି ସଦାଶିବଙ୍କ ଏତେ ବିଷାଦଗ୍ରସ୍ତ ସ୍ଥିତିରେ ମଧ୍ୟ କୌତୂହଳ ଭରିଦେଲା । ସିଏ ଭାବିଲେ ମାଙ୍କଡ଼ ଓ ମଣିଷଙ୍କ ଭିତରେ ପ୍ରଭେଦ ବା କେତେ ? ହିଂସା ଓ ଅସୂୟାର ପରିଣତି ପଶୁ ଓ ମଣିଷଙ୍କ କ୍ଷେତ୍ରରେ ଏକାଭଳି । ପୁଣି ହିଂସା ହିଁ ମଣିଷକୁ ପଶୁରେ ପରିଣତ କରିଦିଏ ।

ବର୍ଷାକାଳେ ନଦୀବନ୍ଧର ସଂଚିତ ଜଳ ବହିଯିବା ପାଇଁ ଯିମିତି ଉତ୍ତାଳ ହୁଏ, ସିମିତି କୁଳସଭା ଧୈର୍ଯ୍ୟ ହରେଇ ଦେଉଛି । ଆଉବେଳେ ଲାଗୁଛି ସେପଟେ ଯିମିତି ଆମ୍ରବୀଥି ଆଉ ପଣସ ଗଛର ଗହଳି ଏପଟେ ସିମିତି କାରିଗରଙ୍କ ବିଷାଦ ଓ ତ୍ରସ୍ତତାର ଆଉ ଏକ ଉପବନ ବତାସରେ ଆନ୍ଦୋଳିତ । କିଛି କାରିଗର ନିଜ ଆସ୍ଥାନମାନଙ୍କରୁ ଉଠି ଏଣେତେଣେ ବୁଲାଚଲା କଲେ । ଚିକ୍କଣ ବାଲିର ବିସ୍ତାର ଉପରେ ମଳାରୁ ଫିଟିଯାଇଥିବା ତମ୍ୱମାନଙ୍କ ଭଳି ଏମାନେ ଦେଖାଗଲେ । ସଦାଶିବଙ୍କ ଠାରୁ ଉତ୍ତର ମିଳିବା ବିଳମ୍ୱ ହେଉଛି । ଆତଙ୍କର କାରଣ ହେଲା ସିନ୍ଦୂରା ଫାଟିଗଲେ ମହାଶ୍ରମ ହୁଏତ ଘାତକ ଦଳନେଇ ମନ୍ଦିର ବେଢ଼ାରେ ପହଞ୍ଚିଯିବେ ଆଉ ବାରଶ' ବଢ଼େଇଙ୍କ ମୁଣ୍ଡହୀନ କବନ୍ଧ ଗୁଡିଙ୍କ ଅଲୋଡ଼ା ଭାସ୍କର୍ଯ୍ୟ ଭଳି ବାଲିର ଶେଯରେ ଲୋଟିପଡିବ ।

ସଦାଶିବ ସତେ ଯିମିତି ପଥର ପାଲଟି ଗଲେଣି । ନିଶ୍ଚଳ । ନିର୍ବାକ । ପାଟିରେ ଭାଷା ନାହିଁ । ଧାରଣା ହେଉଛି ତାଙ୍କ ହାତ ତିଆରି ମନ୍ଦିରଟି ତାଙ୍କ ଉପରେ ଅଜାଡ଼ି ହେଇଯିବ । ସିମିତି ବି ଯଦି ଦୈବାତ୍ ହେଇଯାଏ, ତାହେଲେ ଏ ଯନ୍ତ୍ରଣାରୁ ଚିରଦିନ ଲାଗି ମୁକ୍ତି ମିଳିଯିବ ଆଉ ସିଏ ଏଭଳି ଏକ ଷଡ଼ଯନ୍ତ୍ରରୁ ବର୍ତ୍ତିଯିବେ । ଏତେବେଳଯାଏଁ ସବୁ ଦେଖି, ଶୁଣି, ହେଜି କୁଳସଭାରେ ସାମିଲ ହେଇ ନୀରବରେ ବାପାଙ୍କ ପାଖରେ ବସି ରହିଥିବା କୋଡପୋଛା ବାରବର୍ଷର ନିଷ୍ପାପ ବାଳକଟିଏ ଖୁବ୍ ସାହସର ସହିତ ଉଠି ଠିଆ ହେଲା । ବନ୍ଧୁବାନ୍ଧବ କୁଳଜନଙ୍କ ଆଡ଼େ ଆଖି ପହଁରେଇ ଆଣିଲା । ମନେହେଲା ଚକ୍ରବ୍ୟୁହ ମଧ୍ୟରେ ସପ୍ତରଥୀଙ୍କୁ ସାମନା କରି ବାଳବୀର ଅଭିମନ୍ୟୁ ଠିଆ ହୋଇଛି ମୃତ୍ୟୁ ସହିତ ମୁକାବିଲା କ୍ରିବା ପାଇଁ । ସଦାଶିବ ଚମକି ଉଠିଲେ । ତାଙ୍କ ଉତ୍କଣ୍ଠା ବଢ଼ିଗଲା । ସିଏ ତ ଦେଉଳର ମୁଣ୍ଡି ମାରିସାରିଛି ।

ଶିଳ୍ପୀକୁଳର, ବଂଶ ପରମ୍ପରାର ଟେକ ରଖିସାରିଛି । ଆଉ ସେଥିପାଇଁ ଯଦି ତାକୁ ପ୍ରାଣ ବିସର୍ଜନ କରିବାକୁ ପଡେ ତାହେଲେ ଆଉ ଭୟ କେଉଁଠି ରହିଲା ? ସଦାଶିବ ଭାବିଲେ ଏତେବଡ଼ ଶିଳ୍ପୀ ସମାବେଶରେ ବାଳୁତ ଧରମାର ପୁଣି ବକ୍ତବ୍ୟ କ'ଣ ? ସିଏ କ'ଣ ତାଙ୍କ ପ୍ରାଣର ଆକୁଳ ନିବେଦନକୁ ପ୍ରତିଧ୍ୱନିତ କରିଦେବ ? ଧରମା ଠିଆ ହେବା ଦେଖି ଶିଳ୍ପୀକୁଳ ଉଦ୍‌ଗ୍ରୀବ ଓ ଉତ୍‌କର୍ଣ୍ଣ ହୋଇଉଠିଲେ । ଖୁବ୍ ନିର୍ଭୟରେ, ନିର୍ଭୀକ ଭାବରେ ଧରମା ତା ବକ୍ତବ୍ୟ ଆରମ୍ଭ କଲା –

''ଶୁଣିମା ହେଉ କଳିଙ୍ଗ ଦେଶର ମହାମାନ୍ୟ ଶିଳ୍ପୀକୁଳ ! ଆପଣମାନେ କଳିଙ୍ଗ କଳାପରମ୍ପରାର ସୁଯୋଗ୍ୟ ରକ୍ଷକ । ଆପଣମାନଙ୍କ କଳାଚାତୁରୀ, ଶିଳ୍ପପରାକାଷ୍ଠା ଓ ବିନ୍ଧାଣିପଣର ପଟାନ୍ତର ନାହିଁ । ସମ୍ରାଟଙ୍କ ଦିଗ୍‌ବିଜୟର ସ୍ମାରକୀ ଭାବେ ସୂର୍ଯ୍ୟୋପାସନାର ଯେଉଁ ସୁରମ୍ୟ ପ୍ରାସାଦ ଆପଣମାନେ ଗଢ଼ିଛନ୍ତି, ବିଶ୍ୱକଳାରେ ତାହା ଅନନ୍ୟ ଓ ଅତୁଳନୀୟ । ମନ୍ଦିରନିର୍ମାଣ ସହିତ ଆପଣଙ୍କ ସୃଜନବୈଭବ ଓ ଶିଳ୍ପ ଗୌରବ ଅଙ୍ଗାଙ୍ଗି ଭାବେ ଜଡ଼ିତ । ଏଭଳି ଏକ ଅଭିନବ ରଥଯୁକ୍ତ ମନ୍ଦିରର ପରିକଳ୍ପନା କଳିଙ୍ଗ ସ୍ଥାପତ୍ୟ କଳାର ଏକ ସ୍ୱାଗତଯୋଗ୍ୟ ବ୍ୟତିକ୍ରମ । ପଥରରେ ଗତିଶୀଳ ରଥର ନିର୍ମାଣ କେବଳ ଆମରାଜ୍ୟ ନୁହେଁ ଅନ୍ୟାନ୍ୟ ରାଜ୍ୟର ସ୍ଥାପତ୍ୟ କଳାରେ ମଧ୍ୟ ନୂତନ । ମନ୍ଦିରର ମୂର୍ତ୍ତିକାମରେ ସୂଚୀକାମର ପ୍ରୟୋଗ ସୂକ୍ଷ୍ମକଳାର ଶ୍ରେଷ୍ଠ ନିଦର୍ଶନ । କୋଣାର୍କର ରଥଚକ୍ର କେବଳ ସମୟର, କାଳର ନିୟାମକ ନୁହେଁ ତାହା ସତେ ଯିମିତି ଧର୍ମଚକ୍ର । ଏହି ପୁଣ୍ୟଦେବାଳୟର ଶିଳ୍ପୀ ଭାବେ, ନିର୍ମାତା ଭାବେ ଏ ଓଡ଼ିଆ ଜାତି ଆପଣମାନଙ୍କୁ ମନେରଖିବ ଏବଂ ତା ସହିତ ଅମର ହୋଇ ରହିବେ ମୋର ପିତା, କୁଳମୁଖ୍ୟ ସୂତ୍ରଧର ସଦାଶିବ ସାମନ୍ତରାୟ ମହାପାତ୍ର । ଯେତେ ଅବିଶ୍ୱସନୀୟ ମନେହେଉଥିଲେ ବି ମନ୍ଦିର ଇତିହାସ ସହିତ ଯୋଡି ହୋଇଯିବ ବାରବର୍ଷର ଗୋଟିଏ ବାଳକର ଅଦ୍ଭୁତ କରାମତି । ଯାହାକୁ ବାରଶ' ପ୍ରବୀଣ ବିନ୍ଧାଣି ପାରିଲେନି ସେଭଳି ଦୁରୂହ କାର୍ଯ୍ୟକୁ ଅନାୟାସରେ ସଂପନ୍ନ କରିଦେଇ ପାରିଲା ଗୋଟିଏ ବାରବର୍ଷର ବାଳକ । ଆପଣମାନେ ଏତେ ବଡ଼ ପ୍ରକାଣ୍ଡ ମନ୍ଦିର ଗଢ଼ିଦେଇ ପାରିଲେ ଅଥଚ ମୁଣ୍ଡିମାରିବା ଭଳି ସାଧାରଣ କୌଶଳଟିଏ ଆପଣେଇ ପାରିଲେନି । ଛି ! ଆପଣମାନଙ୍କ ପାରିବାର ପଣିଆ । ଧିକ୍ ! ଆପଣମାନଙ୍କ ଶୈଳ୍ପିକ ପରାକାଷ୍ଠା । ମୁଁ ନୁହେଁ, ଆପଣମାନେ ମହୋଦଧିରେ ଝାସ ଦେଇ କଳିଙ୍ଗ କଳାପରମ୍ପରାର ମାନରକ୍ଷା କରିବା କଥା ।

ଆପଣମାନେ ତ ଇତିହାସ ରଚିସାରିଛନ୍ତି ଆଉ ଜୀବନକୁ ଡର କାହିଁକି ? କାହିଁକି ଏକ ନିଷ୍ପାପ ଶିଶୁର ରକ୍ତରେ ଶିଳ୍ପୀକୁଳର ପିତୃପୁରୁଷଙ୍କ ତର୍ପଣ କରିବା ପାଇଁ ଚାହୁଁଛନ୍ତି ? ମୃତ୍ୟୁ ଚିନ୍ତା ଆପଣମାନଙ୍କୁ ଏବେ ଭୀତତ୍ରସ୍ତ ଓ ଆତଙ୍କିତ କରିଦେଇଛି । ମୁଖ୍ୟ ସ୍ଥପତି ସଦାଶିବ

ସାମନ୍ତରାୟ ମହାପାତ୍ର ଏ ମନ୍ଦିରର ସୂତ୍ରଧର ବୋଲି ତାଙ୍କଠାରୁ ଆପଣମାନେ ଉତ୍ତର ଚାହୁଁଛନ୍ତି । କଳଶକୁ ମନ୍ଦିର ଚୂଡ଼ାରେ ବସେଇବା ସୂତ୍ରଧରଙ୍କ ଇଷ୍ଟବୋଲି ଆପଣମାନେ ତାଙ୍କଠାରୁ କୈଫିୟତ ଦାବି କରୁଛନ୍ତି ? ସୂତ୍ରଧର ଅସୁସ୍ଥ ବୋଲି ତାଙ୍କ ଡ଼ାକରାରେ ମୁଁ ଏଠି ପହଞ୍ଚିଛି । ବାପା ସାମାନ୍ୟ କଳଶ ସ୍ଥାପନା କୌଶଳ ଜାଣିନାହାନ୍ତି ଆଉ ମୁଁ ତାକୁ ସଂପାଦନ୍ କରିପାରିଲି ବୋଲି ମୋର ବାହାଦୁରି ନେବାର କିଛି ନାହିଁ । ମୁଁ ସୂତ୍ରଧରଙ୍କ ସୁଯୋଗ୍ୟ ସନ୍ତାନ ଓ କଳିଙ୍ଗ ଶିଳ୍ପ ପରମ୍ପରାର ଦାୟାଦ । ବାପାଙ୍କ ମୁଣ୍ଡରେ କେବଳ କଳଶ ସ୍ଥାପନା ବୋଲି ନୁହେଁ, ସଂସାର ଯାକର ଚିନ୍ତା । ଏ ଚିନ୍ତା ଦିନକର ବା ମାସକର ନୁହେଁ ବା ଏଭଳିକି ବର୍ଷକର ବି ନୁହେଁ, ଦୀର୍ଘ ବାରବର୍ଷର । ବାର ବର୍ଷ ଭିତରେ ସିଏ ପଥରଙ୍କ ସାଙ୍ଗରେ ପଥର ହେଇଯାଇଛନ୍ତି । କେତେ ଘାତ, ପ୍ରତିଘାତ ସହିଛନ୍ତି । କେତେ ଉଠାଣି ପଡ଼ାଣି ଦେଇ ମନ୍ଦିରକାମ ଆଗେଇ ନେଇଛନ୍ତି । ଏଣେ ଘରେ ମା' ଏକୁଟିଆ । ବାପଛେଉଣ୍ଡ ପିଲାଟିଏକୁ ପାଳିଲା ଭଳି ମୋତେ ଲାଳନ ପାଳନ କରି ବାରବର୍ଷର କରିଛି । ମୁଁ କାରିଗର ଘରର ପିଲା । ମା'ଠୁ ମନ୍ଦିର ନିର୍ମାଣ କୌଶଳ ଶିଖିଛି । ଏଗାରୁପଟ୍ଟ ବିଧିରେ ଲୁହା ଚୁମ୍ବକ ଖଞ୍ଜି କଳଶ ଥାପିବାର କୌଶଳ ଜଣାଥିଲା ବୋଲି ମୁଁ ଏତେ ସହଜରେ ତାକୁ ଗୁନ୍ଥି ଦେଇପାରିଲି । ମୋତେ ଜଣାଥିଲା ଏତେବଡ଼ ମନ୍ଦିରରେ କଷା ଖପୁରି ଲାଗେନି, ଲାଗେ ବସା ଖପୁରି । ମୋତେ ଯାହା ପାଇଟାଳ ମାନେ ଆଉ ହାତୀଆଳ ମାନେ ସହାୟତା ଦେଲେ, ଗଙ୍ଗା ମହାପାତ୍ରେ ମୋତେ କାମରେ ସାହାଯ୍ୟ କଲେ । କଳଶ ସ୍ଥାପନା କରିବା ପାଇଁ ଖପୁରି ଉପରେ ଯେଉଁ ଗାତ କରାହେଇଥିଲା ତାକୁ ଅଧିକା ଖୋଳି ଚାରିଆଡ଼କୁ ବଢ଼େଇବାକୁ ହେଲା । ଆପଣମାନେ ତରବରରେ କଳଶର ବଇଠାକୁ ତା'ରି ଭିତରେ ଖପେଇବାକୁ ଚେଷ୍ଟା କରି ମଧ୍ୟ ପାରୁନଥିଲେ । ତାହାହିଁ ଥିଲା ଦୁର୍ଯୋଗ । ଥରେ ଚୁମ୍ବକ ଲୁହା ଖପୁରି ଗାତରେ ଖାପିଗଲାପରେ କଳଶ ବସେଇବାରେ ଆଉ ଅଡୁଆ ହେଲାନି । ସମୟର ସ୍ୱଳ୍ପତା ଏଭଳି ଭାବରେ ଆପଣମାନଙ୍କ ମାନସିକତାକୁ ଆକ୍ରାନ୍ତ କରିଥିଲା ଯେ ଯୁଗଯୁଗର ଶୈଳ୍ପିକ ପରମ୍ପରାକୁ ଆପଣମାନଙ୍କ ଭଳି ପ୍ରବୀଣ ଶିଳ୍ପୀମାନେ ଭୁଲି ସାରିଥିଲେ । କଳଶ-ରତ୍ନମୁଦ କାମ ତ ଶେଷ ହେଇଯାଇଥିଲା । ନପୁଂସକ ଶୀଳା ତ କଳଶ ବଇଠାରେ ଖପିଆ ସରିଥିଲା ଥରେ କଳଶ ସିଧା ଠିଆ ହେଇଗଲା ପରେ ଆଉ ସମସ୍ୟା ବୋଲି କିଛି ରହିଲାନି । ଯାହାକୁ ଯଥା ସ୍ଥାନରେ ଖପେଇବା ପାଇଁ ଆପଣମାନେ ଘର୍ମାକ୍ତ ହେଉଥିଲେ, ଯାହା ଆପଣମାନଙ୍କ ମୁଣ୍ଡରେ ବୋଝଭଳି ଲାଗୁଥିଲା ତାହା ଏତେ ସହଜ ସରଳ ହେଇଗଲା ଯେ ଆପଣମାନେ ଆଚମ୍ବିତ ହେଇଗଲେ । ପଦ୍ମଦଣ୍ଡ କଳଶ ରନ୍ଧ୍ରରେ ପଶିଗଲା ପରେ କଳଶର ତଳ ଓ ଉପର ଚକି ପରସ୍ପରକୁ ଖପିଗଲେ । ଅବଶ୍ୟ ଆପଣମାନେ ଯାହାକୁ ଅସାଧ ଭାବି ଚିନ୍ତିତ ହେଇପଡିଥିଲେ, ତାହା ଏହି ବାରବର୍ଷର ବାଳକଟି ଅନାୟାସରେ ସାଧି ଦେଇ ପାରିଲା । ଗୋଟିଏ ପଟେ ଅଭିଜ୍ଞ, ପ୍ରବୀଣ ବାରଶ' ଶିଳ୍ପୀଙ୍କ ମାନ ଏବଂ ଅନ୍ୟପଟେ

ଗୋଟିଏ ବାରବର୍ଷର ସାମାନ୍ୟ ବାଳକର ଅଦ୍ଭୁତ କରାମତି ଆପଣଙ୍କ ବିଚାରରେ ଟଉଳି ହେବାକୁ ଲାଗିଛି । ଆପଣ ଏବେ ଭୟଭୀତ ।''

''ନିଜ ଛାଇ ପ୍ରେତ ହେଇ ନିଜକୁ ଗୋଡାଉଛି । ଆପଣମାନଙ୍କ ତ୍ରସ୍ତତା ମୁଁ ଏବେ ହେଜି ପାରୁଛି । ଆପଣମାନଙ୍କ ଶଙ୍କା ସଂପୂର୍ଣ୍ଣ ଅମୂଳକ । ଯଦିବା ସମ୍ରାଟ ଜାଣନ୍ତି ଯେ ମନ୍ଦିରର କଳଶ ସ୍ଥାପନା ସୂତ୍ରଧରଙ୍କ ବାରବର୍ଷ ବାଳକର କାମ, ସିଏ ନିଶ୍ଚିତଭାବେ ଉତ୍‌ଫୁଲ୍ଲ ହେଇଉଠିବେ । କଳିଙ୍ଗର ସ୍ଥାପତ୍ୟ ପରମ୍ପରାର ଚେର ଯେ ଏତେ ଗଭୀର ସେ ଏକଥା ଜାଣିଲେ କାରିଗରକୁଳ ପ୍ରତି ତାଙ୍କ ମର୍ଯ୍ୟାଦା ଦ୍ୱିଗୁଣିତ ହେଇଯିବ । ମୁଣ୍ଡକାଟ କଥା କେବଳ ଉପଲକ୍ଷ ମାତ୍ର ।''

''ଆପଣମାନଙ୍କ ଶଙ୍କାଗ୍ରସ୍ତ ମନ, ପ୍ରାଣ ଓ ହୃଦୟରେ ପାରିବାରିକ ସ୍ନେହାନୁବନ୍ଧନର ସ୍ଥାନ ନାହିଁ । ପ୍ରେମ, ବନ୍ଧୁତା ଓ ମାନବିକତା ଯଶ ଓ ପ୍ରଶଂସା ଭଳି ବାହ୍ୟ ଆଡ଼ମ୍ବର ଓ ଆସ୍ଫାଳନ ଭିତରେ ସୀମିତ । ପ୍ରତ୍ୟେକ ଶିଳ୍ପୀଙ୍କ ଜୀବନରେ ଏଭଳି ବହୁ ଅବ୍ୟବସ୍ଥିତ ମୁହୂର୍ତ୍ତ ଆସେ । ସିଏ ତା ନିଜ ହାତଗଢ଼ା ଶିଳ୍ପକର୍ମ ସହିତ ଏଭଳି ଏକାତ୍ମ ହେଇଯାଏ ଯେ ସିଏ ତା'ରି ମାଧ୍ୟମରେ ବଂଚିବା ପାଇଁ ଚାହେଁ । ସିଏ ଭାବିବସେ ଶିଳ୍ପ ଜୀବନ ଅପେକ୍ଷା ମହତ୍ତର ଓ ମହାନ୍ । ତା'ର ଅନୁଭବ ହୁଏ ସତେ ଯିମିତି ଶିଳ୍ପ ତା ପ୍ରାଣର ସବୁ ତେଜ, ଓଜ ଶୋଷିନେଇ ତାକୁ ନିଷ୍ପ୍ରାଣ ଓ ନିରସ କରିଦେଇଛି । ଶେଷରେ ତା' ଶିଳ୍ପକଳା ହିଁ ତା' ସନ୍ତାନର ଭୂମିକା ନିର୍ବାହ କରୁଛି । ଆପଣମାନେ ନିଜ ଘର, ପରିବାର, ସ୍ତ୍ରୀ ପୁତ୍ର କନ୍ୟା, ହୁଏତ ବୃଦ୍ଧ ପିତାମାତାଙ୍କୁ ସେମାନଙ୍କ ନିଜନିଜ ଦାୟିତ୍ୱରେ ସମର୍ପି ଦେଇ ଦୀର୍ଘ ବାରବର୍ଷକାଳ ଏ ନିର୍ଜୀବ ପଥରମାନଙ୍କ ସହିତ ବନ୍ଧୁତାକୁ ଜୀବନର ଶ୍ରେୟ  କରିଦେଇଛନ୍ତି । ଆପଣମାନଙ୍କ ପାଇଁ ରକ୍ତମାଂସର ଜୀବନ ଜୀବନ ନୁହେଁ ଏ ପଥର ହିଁ ସତ୍ୟ । ପଥରର ଆକର୍ଷଣ ବାହାରେ ଯେ ଜୀବନର ଗୋଟିଏ ବୃହତ୍ତର ପ୍ରେମର ପସରା ଅଛି ସେକଥା ଆପଣମାନେ ଭୁଲି ସାରିଛନ୍ତି । କେତେ ମଧୁମୟ, କେତେ ସ୍ନେହକାଙ୍ଗାଳ ସେ ପରିଧି । ସେହି ପରିଧି ଭିତରେ ଆଶା ଓ ଆକାଙ୍କ୍ଷାକୁ ପୁଞ୍ଜିକରି ବଂଚିରହିଥିବା ଆପଣମାନଙ୍କ ପରିବାର । ତା'ରି ଭିତରେ ମୋ ଭଳି ପିତୃସ୍ନେହକାଙ୍ଗାଳ ଶହଶହ ସନ୍ତାନ । ଆପଣମାନେ ଏତେ କରି ସ୍ୱାର୍ଥାନ୍ଧ ଯେ ଆପଣଙ୍କ ଦୃଷ୍ଟି ସୀମିତ, ବିଚାର ବିଭ୍ରାଟ ଓ କରଣି ବୈକଲ୍ୟ । ଆପଣଙ୍କ ଶିଳ୍ପସିଦ୍ଧି ଅର୍ଥ ଓ ଯଶଃ ପ୍ରାପ୍ତିରେ ମୋହଗ୍ରସ୍ତ । ଏଣୁ ନିଜନିଜର ଦୋଷ ଦୁର୍ବଳତା, ଅସହାୟତା ଓ ଅସାମର୍ଥ୍ୟତାକୁ ଘୋଡ଼େଇ ଦେବାରେ ଆପଣମାନେ ତତ୍ପର ।''

''ମୋ ଧାରଣା ଥିଲା ମୁଣ୍ଡିମାରି ତଳକୁ ଓହ୍ଲେଇ ଆସିଲା ପରେ ଆପଣମାନେ ସ୍ନେହର ଆତିଶଯ୍ୟରେ ମୋତେ କୋଳ କରିନେବେ, କପାଳରେ ବିଜୟଟୀକା ଲେଖିଦେବେ, ମୋ

ଗଣ୍ଡରେ ଚୁମ୍ବନ ଦେଇଦେବେ । ମୋ କାମ ଆପଣମାନଙ୍କ ମନ ଓ ପ୍ରାଣରେ ଗର୍ବ ଓ ଗୌରବ ଆଣିଦେବ । ଆପଣମାନେ ଅନୁଭବ କରିବେ ମୁଁ କେବଳ ସୂତ୍ରଧର ସଦାଶିବ ସାମନ୍ତରାୟଙ୍କ ପୁଅ ନୁହେଁ, ଆପଣମାନଙ୍କ ସମସ୍ତଙ୍କର, ସମଗ୍ର ଶିଳ୍ପୀକୁଳର, ଏ ମାଟିର, ଏ ଦେଶର । ମୁଁ କେବଳ ଜଣେ ବ୍ୟକ୍ତିବିଶେଷ ନୁହେଁ, ଏକ ଗୌରବାବହ ପରମ୍ପରାର ସ୍ଫୁଲିଙ୍ଗ । ମୁଁ ଭାବିଥିଲି ମୋ ଉପସ୍ଥିତି ଆପଣମାନଙ୍କୁ ପରମ୍ପରା ସାଙ୍ଗରେ ଏକାତ୍ମ ହେବାରେ ସହାୟକ ହେବ । ଆପଣଙ୍କ ବ୍ୟକ୍ତିଚେତନା ସାମୁହିକତାରେ ସମାହିତ ହୋଇଯିବ । କୋଣାର୍କର ସୂର୍ଯ୍ୟରଥ କୌଣସି ବ୍ୟକ୍ତିର କରଣି ନୁହେଁ ଏହା ଗୋଟିଏ ଜାତିର ଶିଳ୍ପପରାକାଷ୍ଠାର ସନ୍ତକ । ମୋତେ ଆଚମ୍ବିତ ଲାଗୁଛି ଉଦାରତାର ଏତେବଡ଼ ବେଷ୍ଟନୀ ଭିତରେ ମୋ ପାଇଁ ଟିକିଏ ବି ସ୍ଥାନ ନାହିଁ । ଶିଳ୍ପପ୍ରକ୍ରିୟାର ଏତେ ବଡ଼ ଉତ୍ସ ଭିତରେ ଆପଣମାନେ ମୋତେ ସଂପୃକ୍ତ କରିପାରିଲେନି । ପରମ୍ପରାର ଏତେବଡ଼ ଗଣ୍ଡି ଭିତରେ ପୁଣି ପ୍ରବୀଣ ଓ ନବୀନର ତାରତମ୍ୟ ! ପୁଣି କଳିଙ୍ଗ ଦେଶରେ ସୃଜନର ପ୍ରତିଭାଦୀପ୍ତ ବେଦୀ ଉପରେ ନବୀନର ହତାଦର ଆଦୌ ଶୋଭନୀୟ ନୁହେଁ । ଆପଣମାନେ ଏତେ ପ୍ରବୀଣ, ବରିଷ୍ଠ, ବୟୋଜ୍ୟେଷ୍ଠ ହୋଇ ସୁଦ୍ଧା ନବୀନର ସାମାନ୍ୟ ଆହ୍ୱାନକୁ, ଆସ୍ପୃହାକୁ ସହୃଦୟତାର ସହ ଘେନି ପାରିଲେନି ? ଆଶ୍ଚର୍ଯ୍ୟ ଲାଗିଲା ଏତେବଡ଼ ଶିଳ୍ପୀ ସମାଜର ବିଚାର ! ଏତେବଡ଼ କଳାପ୍ରେମୀ ଜାତିର ନିଃସ୍ୱାର୍ଥ ପରମ୍ପରାରେ ସ୍ୱାର୍ଥର କାଳିମା ବୋଳି ଦେବା ପାଇଁ ଆପଣମାନେ ଆଗେଇ ଆସିଛନ୍ତି !''

ଗୋଟିଏ ସିଂହଶାବକର ପରାକ୍ରମନେଇ କଳିଙ୍ଗ କାରିଗରପୁଅ ଧରମା ନିଜ ମନର କ୍ଷୋଭ ବଖାଣି ଯାଉଛି । ସିଏ ଦେଖିପାରୁଛି ତା ପ୍ରାଣର ଦିଗନ୍ତରେ ମୃତ୍ୟୁର ଶୀତଳ ଆହ୍ୱାନ । ଦଳେ କାପୁରୁଷଙ୍କ ଷଡ଼ଯନ୍ତର ମାୟାଜାଲ, ବ୍ୟାଧର ଜାଲ ଭଳି ଚତୁର୍ଦ୍ଦିଗୁ ତାକୁ ବେଢ଼େଇ ଆଣୁଛି । ସମସ୍ତ ଶିଳ୍ପୀକୁଳ ସ୍ତବ୍ଧ, ଚକିତ ଓ ଲଜ୍ଜାରେ ମୁଣ୍ଡ ନୁଆଁଇ ଶୁଣୁଛନ୍ତି ଗୋଟିଏ ବାଳକର ସତ୍ୟନିଷ୍ଠ ଭର୍ତ୍ସନା । ସବୁଠାରୁ ଯିଏ ଅଧିକ ଅଭିଭୂତ ସିଏ ବାଳକର ଜନ୍ମଦାତା ନିଜେ ସଦାଶିବ । କୋଣାର୍କ ସୂର୍ଯ୍ୟରଥର ମୁଖ୍ୟ ସ୍ଥପତି ବୋଲି ନୁହେଁ, ଏଭଳି ଗୋଟିଏ ନିର୍ଭିକ ଓ ସଚ୍ଚୋଟ ସନ୍ତାନର ବାପ ବୋଲି । ସଦାଶିବଙ୍କ ଆନ୍ଦୋଳିତ ଭାବରାଜ୍ୟରେ ବିପରୀତ ଧର୍ମୀ ଦୁଇଟି ପ୍ରବାହ । ଗୋଟିଏ ପିତୃତ୍ୱର ଗୌରବ ଏବଂ ଅନ୍ୟଟି ଏହି ଗୌରବକୁ ହଜେଇ ଦେବାର ଯନ୍ତ୍ରଣା । ସିଏ ଗୋଟିଏ ମୁହୂର୍ତ୍ତରେ ଉଲ୍ଲସିତ ତ ପରକ୍ଷଣରେ ଆତ୍ମଗ୍ଳାନିର ଅତଳ ସାଗର ଭିତରେ ସଂପୂର୍ଣ୍ଣ ବିଲୁପ୍ତ । ସଦାଶିବଙ୍କ ମନେପଡିଯାଉଛି ବାରବର୍ଷ ତଳର ଗୋଟିଏ ପ୍ରେମଦଗ୍ଧ ମୁହୂର୍ତ୍ତର ଘଟଣା । ଭାର୍ଯ୍ୟା କନକ ମଂଜରୀଙ୍କ ଆକୁଳ ନିବେଦନ । ଆଉ ମାତ୍ର ଦୁଇଟି ମାସ, ହୋଇ ଦେଖୁଦେଖୁ କୁଆଡ଼େ ସରିଯିବ । ତା'ପରେ ମନ୍ଦିର କାମରେ ଗଲେ ଚଳିବନି ? ନା ସମ୍ଭବ ନୁହେଁ, ସଦାଶିବ ଏକ ଅସଂପୃକ୍ତ କଣ୍ଠରେ କହୁଛନ୍ତି । ସୂର୍ଯ୍ୟରଥର ପରିକଳ୍ପନାକୁ ରୂପ ଦେବାକୁ ସେ ଅଥୟ । ସୂର୍ଯ୍ୟରଥ ସତେ ଯିମିତି ହାତଠାରି ଡାକୁଛି, ସଦାଶିବ ତମେ ହିଁ

ଏତେବଡ଼ ନଭଶ୍ଚୁମ୍ବୀ ପ୍ରାସାଦକୁ ରୂପଦେଇ ପାରିବ । ଆସ ! ଶୀଘ୍ର ଆସ ! ସଦାଶିବଙ୍କ ପାଇଁ ରକ୍ତର ସଂପର୍କ କ୍ଷଣିକ ପାଇଁ ତୁଚ୍ଛ ହେଇଯାଉଛି ଅପାର୍ଥିବ କଳାର ସଂପର୍କ ପାଖରେ । ଏବେ ପୁଣି ଦୀର୍ଘ ବାରବର୍ଷ ପରେ କଳାର ସେହି ମହନୀୟ ସଂପର୍କକୁ ରକ୍ତ ମାଂସର ପାର୍ଥିବ ସଂପର୍କ ଆଗରେ ନ୍ୟୂନ କରିଦେଇ ରକ୍ତର ସମ୍ମୋହନକୁ ଗୁରୁତ୍ୱ ଦେବାର କି ଅବା ଯଥାର୍ଥତା ଥାଇପାରେ । ସନ୍ତାନର ହସନ୍ତ ମୁହଁ ଦେଖି ଆତ୍ମତୃପ୍ତି ଲଭିବାର ସମସ୍ତ ସମ୍ଭାବନାକୁ ସେ ଜୀବନରେ ଥରେ ଜଳାଞ୍ଜଳି ଦେଇ ସାରିଛନ୍ତି । ଆଉ ସେ ବିମଳ-ଆନନ୍ଦର କ୍ଷଣ ଫେରିବାର ନୁହେଁ । ସଦାଶିବ କିଂକର୍ତ୍ତବ୍ୟ ବିମୂଢ଼ ହେଇ କୁଟାଖଣ୍ଡେ ଭଳି ଦୁଃଖର ମହାର୍ଣ୍ଣବ ଭିତରେ ଭାସୁଛନ୍ତି ।

ଧରମା ଅତି ପ୍ରଗଲ୍‌ଭ ଭାବରେ ଉଦ୍‌ଗାରି ଦେଉଛି ତା ପ୍ରାଣର ଆନ୍ଦୋଳିତ ଛୋଟ ଛୋଟ ଅଗ୍ନିକଣା । ଆଉ ସେ ଅଗ୍ନିକଣା ଦାବାନଳ ସାଜି ଦହିଦେଉଛି ସମଗ୍ର ଶିଳ୍ପୀକୂଳ । କଳିଙ୍ଗର ଐତିହ୍ୟ ଓ ପରମ୍ପରା ।

ଧରମା ପୁଣି କହିଚାଲିଲା ।

''ଆପଣମାନେ କୁଳମୁଖ୍ୟ ସଦାଶିବଙ୍କୁ ଯେଉଁ ପ୍ରଶ୍ନ ପଚାରିଛନ୍ତି ସିଏ କ'ଣ ସେହି ଗୁରୁତର ପ୍ରଶ୍ନର ଉତ୍ତର ଦେଇପାରିବେ ? କୌଣସି ପିତା କ'ଣ କସ୍ମିନକାଳେ ଇଚ୍ଛିବ ତାର ଅଲିଅଳ ସନ୍ତାନର ଏଭଳି ଅସ୍ୱାଭାବିକ ବିଲୟ ? ଏଭଳି ଏକ ଅଭାବନୀୟ ପରିସ୍ଥିତିରେ ପଡି ନିଜ ଦାୟାଦର ଜୀବନଦୀପ ନିର୍ବାପିତ ହେଇଯାଉ ଏକଥା କ'ଣ ଜଣେ ପିତା ଚାହିଁବ ? ମୁଁ ଯେହେତୁ ପୁତ୍ର, ମୁଁ ହୃଦୟଙ୍ଗମ କରିପାରୁଛି ଜଣେ ସ୍ନେହକାଙ୍ଗାଳ ପିତାର ସ୍ପନ୍ଦିତପ୍ରାଣର ଭାଷା । କେଉଁ ପିତା ଅବା ନିଜ ପୁତ୍ରର ଆସନ୍ନ ମୃତ୍ୟୁରେ ନିଜକୁ ସମ୍ଭାଳି ପାରିବ ? ସ୍ଥିତି ଘୋର ଦୁର୍ଭାଗ୍ୟଜନକ । ସୂତ୍ରଧର, କାରିଗର ସମସ୍ତେ ଏକ କୁତ୍ସିତ, ଜଘନ୍ୟ ମାନସିକତାର ଶିକାର ହେଇସାରିଛନ୍ତି ।''

ଧରମା ତା'ର କଠୋର ନିଷ୍ପତ୍ତି ଏଥର ଶୁଣେଇଦେଲା । ''ଯଦି ମୋର ମୃତ୍ୟୁ ହିଁ ଆପଣମାନଙ୍କର ଏକାନ୍ତ କାମ୍ୟ, ଯଦି ତାହା ଆପଣମାନଙ୍କ ଏକ ଉଜ୍ଜ୍ୱଳ ଭବିଷ୍ୟତର ସମ୍ଭାବନା ଟେକି ଦେଇପାରେ ତା ହେଲେ ମୋ ଠାରୁ ଶେଷଥର ପାଇଁ ଶୁଣି ଥାଆନ୍ତୁ ମୋର ବଜ୍ର ଶପଥ । ଏହାହିଁ ମୋ ପିତାଙ୍କର ଆପଣମାନଙ୍କ ପାଇଁ ପ୍ରତିଶ୍ରୁତି । ମୋ ପିତା ଯାହା କହିଥାନ୍ତେ ତାହାହିଁ ମୁଁ କହୁଛି ।''

'ମୁଁ ବାରଣ' ବଢ଼େଇରେ ଦାୟ, ପୁଅରେ ନୁହେଁ' ।

ଧରମାର ଶେଷ ବାକ୍ୟଟି କୋଣାର୍କ ବେଢ଼ାର ଆମ୍ରକୁଞ୍ଜରେ ପ୍ରତିଧ୍ୱନିତ ହେଲା । 'ମୁଁ ବାରଣ' ବଢ଼େଇରେ ଦାୟ, ପୁଅରେ ନୁହେଁ ।' ମନେହେଲା ସେହି ଗୋଟିଏ ରକ୍ତରଞ୍ଜିତ

ବାକ୍ୟ ଘୃଣାର ଓ ଆତଙ୍କର ପରିପ୍ରକାଶ ହୋଇଯାଇ ସବୁ କାରିଗରଙ୍କ ପ୍ରାଣରେ ପ୍ରତିଧ୍ୱନିତ ହେଉଛି । ଯାହା ସଦାଶିବ ତାଙ୍କ ଉଦ୍‌ଘୋଷଣାରେ କହିଥାନ୍ତେ ସେହି ଏକାକଥା ସବୁ ଶିଳ୍ପୀ ଦୋହରାଉଛନ୍ତି । ସମସ୍ତେ ନିଜ ନିଜ ସନ୍ତାନମାନଙ୍କୁ ସ୍ୱାର୍ଥର କଳୁଷିତ ଅଗ୍ନିଶିଖା ଭିତରେ ଜଳାଞ୍ଜଳି ଦେବାକୁ ତତ୍ପର ହୋଇ ଉଠୁଛନ୍ତି । କେବଳ ନିଜେ ବଂଚି ରହିବାର, ପ୍ରତିଶ୍ରୁତିରେ ସେମାନେ ଗୋଟିଏ ଆଗାମୀ ପିଢ଼ିକୁ ସଂପୂର୍ଣ୍ଣ ନିଶ୍ଚିହ୍ନ କରିଦେବା ପାଇଁ ଉଦ୍ୟତ । ସତେ ଯେମିତି କୋଣାର୍କ ହିଁ ଏ ଜାତିର ଶେଷ ଶ୍ରେଷ୍ଠ ନିଦର୍ଶନ ହୋଇ ରହିଯିବ । ଗୋଟିଏ ଅଭିଶପ୍ତ ଜାତି କୋଣାର୍କର ଚକ, ଅଳସା ଓ ଅଶ୍ୱର ଶୈଳ୍ପିକ ସମ୍ଭାରକୁ ପାଥେୟ କରି ବଂଚିରହିବ । ଜୀବନସାରା ଚର୍ବିତ ଚର୍ବଣ କରୁଥିବ ଆଉ ସେଥିପାଇଁ ସିଏ ପାଉଥିବ ସହସ୍ର ପୁରସ୍କାର ଓ ସମ୍ମାନ । ଆଉ ଜଣେ ଧରମା, ଆଉ ଗୋଟିଏ ଅଗ୍ନିସ୍ଫୁଲିଙ୍ଗ ସୃଷ୍ଟି ହେବନି । ଏହାହିଁ ଓଡ଼ିଆ ଶିଳ୍ପୀକୁଳର ଭବିତବ୍ୟ ହୋଇ ରହିଯିବ ।

ସଦାଶିବ ଅନୁଭବ କଲେ ମହୋଦଧିର ଲହଡ଼ାମାନେ ସେହି ବଜ୍ରଗମ୍ଭୀର ବାକ୍ୟଟିକୁ ଗଗନରେ ପବନରେ ପ୍ରକମ୍ପିତ କରାଇ ଦେଉଛନ୍ତି । ଚତୁର୍ଦ୍ଦିଗେ ରକ୍ତର ହୋରିଖେଳ । ଲାଗୁଛି ସବୁ କାରିଗର ବିଶ୍ୱାସଘାତକ । ସମସ୍ତଙ୍କ ହାତରେ ଛୁରୀ । ସେମାନଙ୍କ ନଖଦନ୍ତ ଅସ୍ୱାଭାବିକ ଭାବେ ବୃଦ୍ଧି ଘଟି ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ପଶୁରେ ପରିଣତ କରିଦେଇଛି । ସଦାଶିବଙ୍କ କାନ ଅତଡ଼ା ପଡିଯାଉଛି । ମହାଭାସ୍କରଙ୍କ ପାଷାଣ ମନ୍ଦିର ମହୋଦଧିର ଉଚ୍ଚାରଣକୁ ପ୍ରତିଧ୍ୱନିତ କରିଦେଉଛି । ପ୍ରତ୍ୟେକ ଖୋଦିତ ମୂର୍ତ୍ତିରେ ସଦାଶିବଙ୍କ ଯନ୍ତ୍ରଣା ତୀବ୍ରରୁ ତୀବ୍ରତର ହେଲା, ଅସହ୍ୟ, ଅକଥନୀୟ ଓ ଅବର୍ଣ୍ଣନୀୟ ସେ ଯନ୍ତ୍ରଣା । ଯନ୍ତ୍ରଣାର ଉତ୍ତାଳ ନାରକୀୟ ତାଣ୍ଡବର ଅନ୍ତରାଳରେ ସେ ଅନୁଭବ କରୁଥିଲେ ତାଙ୍କ ଧମନୀରେ ମୃତ୍ୟୁର ଏକ ଶୀତଳ ପ୍ରବାହ । ସିଏ ହୁଏତ ତାଙ୍କ କୁଳଭାଇମାନଙ୍କୁ ଅନୁରୋଧ କରିବା ପାଇଁ ଭାବୁଥିଲେ, ହେ ମୋର ସମଧର୍ମା କଳିଙ୍ଗର ବରପୁତ୍ରଗଣ ! ଗୋଟିଏ ନିଷ୍ପାପ ଶିଶୁକୁ ଆମ ସ୍ୱାର୍ଥରେ ବଳିଦେଇ ଯୁଗଯୁଗକୁ ଏ ଜାତିର ଇତିହାସରେ କଳଙ୍କିତ ଅଧ୍ୟାୟଟିଏ ମାତ୍ର ରଖିଦେଇଯିବା ସିନା । ଇତିହାସ କହିବ ଆମେ କେତେ ସ୍ଥବିର ଓ ସ୍ଥାଣୁ । ବୟସର, ଅନୁଭବର ଦ୍ୱାହି ଦେଇ ଗୋଟିଏ ନବୀନ ପ୍ରତିଭାର ହତ୍ୟା କଲେ । ସୃଜନ ପ୍ରତିଭା ବୟସର ଅଲୋଡ଼ା ଛାଇରେ ମଳିନ ପଡିଯାଏନି । ମୁଁ ହାତୀ ସଜ କରିଦେବି ଆପଣମାନେ ଧରମାକୁ ତା ମାତୃକୋଳକୁ ବାହୁଡିବାକୁ ଦିଅନ୍ତୁ ।

ସଦାଶିବ ଧରମାକୁ ବଂଚେଇ ଦେବା ପାଇଁ ମନରେ ଅସରନ୍ତି କଥା ଭାବୁଥିଲେ ସିନା, ପଦଟିଏ ହେଲେ ଉଚ୍ଚାରଣ କରିବାରେ ଅସମର୍ଥ ହେଲେ । ଅସହାୟତାର ଏଭଳି ଶିକାର ହୋଇ ସାରିଥିଲେ ଯେ ସଦାଶିବ ପରମୁହୂର୍ତ୍ତରେ ମୂର୍ଚ୍ଛାଗଲେ । ବେଙ୍ଗା ଆରପାରିରେ ଦଳେ ଶିଆଳ ଏକ ସ୍ୱରରେ ତୁହାକୁ ତୁହା ଭୁକି ଉଠିଲେ । ଦଳେ ଗୋଧିଜାତୀୟ ସରୀସୃପ

ସର୍‌ସାର୍ ହେଇ ପଥରସନ୍ଧା ମାନଙ୍କରେ ପଶିଗଲେ । ପଣସ ବଣ ଆତତାୟୀ ଭଳି ଥରି ଉଠିଲା । ଦଲକାଏ ଶୀତଳ ପବନ ମହୋଦଧି ଆଡୁ ଭାସିଆସିଲା । ମନେହେଲା ରାତିର ଶେଷ ପ୍ରହର ଉପସ୍ଥିତ ହେଲାଣି ।

ମନ୍ଦିର ଚୂଡ଼ାରେ ପହଞ୍ଚିଲା ପରେ କାଳେ ଧରମା ଭୟ ପାଇ ପୁଣି ତଳକୁ ଫେରିଆସିବ ଆଉ ତାକୁ ହତ୍ୟା କରିବା ଯୋଜନା ଫସର ଫାଟିଯିବ ଏଣୁ ଦୁଇଜଣ ପ୍ରତିଶୋଧ ପରାୟଣ ଚୁନରା ଚନ୍ଦ୍ରକାନ୍ତ ଓ ଧଳା ରମେଶ ସିଂହ ଘାତକ ସାଜି ଧରମାର ଅଲକ୍ଷ୍ୟରେ ତା ପଛେ ପଛେ ମନ୍ଦିର ଉପରକୁ ଉଠିଲେ । ଧରମା ଶେଷ ମର୍ମବାକ୍ୟଟି ଉଚ୍ଚାରଣ କରି ସମବେତ ଶିଳ୍ପୀକୁଳ ଉଦ୍ଦେଶ୍ୟରେ ପ୍ରଣାମ ଜଣେଇ ମହାଦୀପ ଦାନ ପାଇଁ ଖଞ୍ଜା ହେଇଥିବା ଲୁହା ଶିକୁଳି ସାହାଯ୍ୟରେ ଏକା ନିଶ୍ୱାସରେ ଚୂଡ଼ା ଶୀର୍ଷକୁ ଉଠିଲା । ଉପରକୁ ଉଠିଯାଇ ଚାରିଆଡ଼େ ଥରେ ଆଖି ବୁଲେଇ ଆଣିଲା । ସେ ଲକ୍ଷ୍ୟକଲା ତାକୁ ନିଘା କରି କିଏ ଦୁଇଜଣ ମନ୍ଦିର ଉପରକୁ ଉଠୁଛନ୍ତି । ଧରମାର ମନେହେଲା, ସିଏ ଯେଉଁ ତ୍ୟାଗ, ନିଷ୍ଠା ଓ ପରମ୍ପରାର କଥା କହିଛି ତାହା ହୁଏତ ଶିଳ୍ପୀକୁଳର ବିଶ୍ୱାସଯୋଗ୍ୟ ହେଲାନି । ସେମାନଙ୍କ ମନରେ ସ୍ୱାର୍ଥର ନିଶା ଏତେ ମାତ୍ରାରେ ଚରିଯାଇଛି ଯେ ସେମାନେ ତା'ର ମୃତ୍ୟୁ ନ ଦେଖିଲାଯାଏଁ ଶାନ୍ତିରେ ନିଶ୍ୱାସ ମାରିପାରିବେନି । ଏଣୁ ହୁଏତ ସେମାନେ ଦୁଇଜଣ ଘାତକଙ୍କୁ ମନ୍ଦିର ଉପରକୁ ପଠେଇଛନ୍ତି । କେତେ ନିଷ୍ଠୁର ଆଉ କ୍ରୁର ହେଇପାରନ୍ତି ଏ ଶିଳ୍ପୀକୁଳ । ଧରମା କୋଣାର୍କ ମନ୍ଦିରର ଚୂଡ଼ା ଶୀର୍ଷରେ ଠିଆ ହୋଇ ଶେଷଥର ପାଇଁ ଶିଳ୍ପୀ ସମାବେଶ ଉପରେ ଦୃଷ୍ଟି ପହଁରେଇ ଆଣିଲା । ବିଷ୍ଠାର ପୋକ ଭଳି ଶିଳ୍ପୀମାନେ ତାକୁ ପ୍ରତେ ହେଲେ । ସିଏ ଅନୁଭବ କଲା ପଥୁରିଆ କାରିଗର ଦଳକ ସେମାନଙ୍କ ନିହାଣ ଓ ମୁଗରକୁ ଛୁରୀଭଳି ଧରି ତାକୁ ହତ୍ୟା କରିବା ପାଇଁ ମନ୍ଦିର ଉପରକୁ ଉଠିବା ପାଇଁ ଉଦ୍ୟତ ହେଉଛନ୍ତି । କେତେ ଘୃଣ୍ୟ, କେତେ ନୀଚ କେତେ ହୀନ ଏ ରକ୍ତପିପାସୁ କାରିଗର ଦଳ । ପରମ୍ପରାର ମୁଖାପିନ୍ଧି, କୁଳଧର୍ମ ଭୁଲି ସ୍ୱାର୍ଥସିଦ୍ଧି ପାଇଁ ପାଗଳ । ଏମାନଙ୍କ ପାଖରେ ସ୍ନେହ, ପ୍ରେମ ଓ ଭ୍ରାତୃତ୍ୱର ବନ୍ଧନ ସଂପୂର୍ଣ୍ଣ ତୁଚ୍ଛ । ସିଏ ତ କଥା ଦେଇସାରିଛି । ପିତାଙ୍କ ଅସହାୟତାର, ସମ୍ବେଦନୀୟ ଆତ୍ମହାର ଯନ୍ତ୍ରଣାକୁ ତ୍ୟାଗର ବିମଳ ଆନନ୍ଦରେ ସେ ଧୋଇ ଦେବାକୁ ଚାହେଁ । ତା'ର ପ୍ରାଣବଳିର ନିଷ୍ପାପ ରକ୍ତରେ ଉଦୟ ସୂର୍ଯ୍ୟ ରଞ୍ଜିତ ହେବେ । ଶିଳ୍ପୀକୁଳ ନିଜ ରକ୍ତରୁ ଉତୁରୁଥିବା ସୂର୍ଯ୍ୟଙ୍କୁ ପ୍ରଣାମ କରିବେ । ଏହା ହେବ ସୂର୍ଯ୍ୟମନ୍ଦିର ପ୍ରତିଷ୍ଠାର ଅମାନବୀୟ ଜାନ୍ତବ ରୂପ ।

ଧରମା ଆଖିବୁଜି ଦଣ୍ଡେ ଠିଆ ହେଲା । ବାପାଙ୍କ ବିଷଣ୍ଣ ସ୍ଥିତି, ସ୍ନେହମୟୀ ମା'ଙ୍କ ଉଜ୍ଜ୍ୱଳ ମୁହଁ ତାର ସ୍ମୃତିରେ ଭାସିଗଲା । ଚନ୍ଦ୍ରକାନ୍ତ ଓ ଧଳା ରମେଶ ସିଂହ ଭାବିଲେ ଏହାହିଁ ପ୍ରକୃଷ୍ଟ ବେଳା । ସେମାନେ ଅତି ନିର୍ଦ୍ଦୟ ଭାବେ ଧରମାକୁ ଚୂଡ଼ା ଉପରୁ ମନ୍ଦିର ତଳକୁ ଠେଲି

ଦେଲେ । ଆମଳକ, ବେକି, ବେକି ମୂଳର ଦୋପିଛା ସିଂହରେ ବାଡ଼େଇ ହେଇ ରାହାପାଗ ଦେଇ ଧରମାର ଅଲିଅଳ ଦେହଟି ହାଡ଼ ଓ ମାଂସର ବୁଜୁଳିଟିଏ ହେଇ ବାଲି ଶେଯ ଉପରେ ପଡିଗଲା । ଏଭଳି ଏକ ଜଘନ୍ୟ ଦୃଶ୍ୟ ବାସ୍ତବିକ ଅସହ୍ୟ । କୁଳସଭା ଭିତରୁ ପ୍ରତିବାଦର ସ୍ୱର ଧୀରେ ଧୀରେ ସ୍ପଷ୍ଟ ହେବାକୁ ଲାଗିଲା । ଅପମାନରୁ ମୁକୁଳିବା ପାଇଁ ଗୋଟିଏ ଶିଶୁର ଗଣହତ୍ୟା କ'ଣ ସତରେ ଆମର ଏକମାତ୍ର ଉପାୟ ଥିଲା ? ସତରେ ସତ୍ୟ ପ୍ରକଟ ହେଇଯାଇଥିଲେ ଗଙ୍ଗନରେଶ କ'ଣ ବାରଶ' ବଢ଼େଇଙ୍କ ମୁଣ୍ଡ କାଟି ଦେଇଥାନ୍ତେ ? ସୂତ୍ରଧରଙ୍କୁ ହିଂସା କରୁଥିବା ଅନ୍ୟ ଶିଳ୍ପୀ ଦଳକ ଆପାତତଃ ଆଶ୍ୱସ୍ତ ହେଲେ । କିନ୍ତୁ ଏ ଆଶ୍ୱସ୍ତି ମେଘରେ ବିଜୁଳି ଭଳି କ୍ଷଣସ୍ଥାୟୀ ହେଇଗଲା । ସେମାନେ ମଧ୍ୟ ଶିଶୁହତ୍ୟା ପାପରେ ନିଜକୁ ନିଜ ଅଜାଣତରେ ସାମିଲ କରିଦେଇ ଘାଣ୍ଟିଚକଟି ହେବାକୁ ଲାଗିଲେ । ସେମାନଙ୍କ ଶୋକାନ୍ତ ହୃଦୟର କୌଣସି ଏକ ଗୁପ୍ତ କୋଣରୁ ମାନବିକତାର ମୃଦୁ ତାଡ଼ନାଟିଏ ସେମାନଙ୍କ ବିବେକକୁ ଘନଘନ ଦଂଶିବାରେ ଲାଗିଲା ।

ଦଳେ ଅତ୍ୟନ୍ତ ଚତୁରଶିଳ୍ପୀ ବାଲିଶେଯରେ ଗାଡ଼ଟିଏ ଖୋଳିଦେଇ ଧରମାର ଖଣ୍ଡବିଖଣ୍ଡିତ ଶବଟିକୁ ପୋତି ଦେଇ ନାରକୀୟ ଘଟଣାଟିକୁ ଦୁଃସ୍ୱପ୍ନ ଭଳି ଭୁଲିଯିବାକୁ ଲାଗିଲେ । କିନ୍ତୁ ଏଭଳି ଏକ ସ୍ପର୍ଶକାତର ଘଟଣା ମନରୁ ସଂପୂର୍ଣ୍ଣ ହଟିଯିବାର ନୁହେଁ । ଧରମା କହିଥିବା ବାକ୍ୟଗୁଡିକ ଏବେ ଦିଗ ବିଦିଗରୁ ଅଦୃଶ୍ୟ ବାଣ ଭଳି ବିନ୍ଧିବାକୁ ଲାଗିଲା । ସିନ୍ଦୁରା ଫାଟିଲା । ପୂର୍ବଦିଗ ରକ୍ତକଷାୟ ଦେଖାଗଲା । ସୂର୍ଯ୍ୟୋଦୟ ଆସନ୍ନ । ମୂଳ ମନ୍ଦିରର ଗର୍ଭଗୃହରେ ମଙ୍ଗଳ ଆଳତି ପାଇଁ ସବୁ ଆଡ଼ମ୍ବର ଯୋଗାଡ଼ ହେଇସାରିଲାଣି । ରାଜଗୁରୁ ଧନଞ୍ଜୟ ବିଦ୍ୟାଳଙ୍କାର ସମ୍ରାଟଙ୍କ ପ୍ରତିନିଧି ହେଇ ରାଜଦଣ୍ଡ ଧରି ଉପସ୍ଥିତ ହେଇଗଲେଣି । ରାଜକୁଳପୁରୋହିତ ଆଚମନ କରିବା ପାଇଁ ସୁବର୍ଣ୍ଣ ଗଡୁରୁ ଦକ୍ଷିଣ ହସ୍ତରେ ପାଣି ଢ଼ାଳିଲେ ଏବଂ ସେଥିରେ ବିଗ୍ରହଙ୍କ ପ୍ରତିବିମ୍ବ ଦର୍ଶନ କରିବା ପାଇଁ ଉତ୍କଣ୍ଠାର ସହିତ ଅପେକ୍ଷା କଲେ । ବିଗ୍ରହ ସଂପୂର୍ଣ୍ଣ ଅସ୍ପଷ୍ଟ ଦିଶିଲେ, ତାଙ୍କ ବାମଚକ୍ଷୁ ଘନଘନ ସ୍ଫୁରିତ ହେବାକୁ ଲାଗିଲା । ରାଜଗୁରୁ ଏ ଅଶୁଭ ଶକୁନ ପ୍ରତି ସଚେତନ ହେଲେ । ତଥାପି ଦୀର୍ଘ ବାରବର୍ଷର ଏତେବଡ଼ ଗୁରୁତ୍ୱପୂର୍ଣ୍ଣ ପ୍ରକଳ୍ପର ଶୁଭ ଉନ୍ମୋଚନକୁ ସ୍ଥଗିତ ରଖିବା ପାଇଁ ମନ ନ ବଳେଇ ଯେନତେନ ପ୍ରକାରେଣ ଆଳତି ବିଧି ବଢ଼େଇ ଦେଲେ ଓ ସମଗ୍ର ଘଟଣାଟିକୁ ସମ୍ରାଟଙ୍କ ଜ୍ଞାତସାର ଠାରୁ ଦୂରେଇ ରଖିଲେ ।

ମନ୍ଦିର ଆଡ଼କୁ ରାଜକୀୟ ପଟୁଆର ଆସିବାର ସଙ୍କେତ ମିଳିଲା । ଭେରୀ, ତୁରୀ, କାହାଳୀ, ଯୋଡିନାଗରା, ମୃଦଙ୍ଗ, ନିଶାଣ ଓ କରତାଳର ଉନ୍ମାଦ ଘୋଷ ମନ୍ଦିରର ନିକଟତର ହେଲା । ସ୍ୱର୍ଣ୍ଣଜରି ଖଚିତ ରତ୍ନହାଉଦା ଉପରେ ଉପବେଶନ କରି ସାଙ୍ଗରେ ରାଜମାତା

ପାଟମହାଦେବୀ କସ୍ତୁରିକାମୋଦିନୀଙ୍କୁ ଘେନି ସମ୍ରାଟ, ଧର୍ମପାଳ, ବୀରଶ୍ରୀ, ସକଳଗୁଣ, ସକଳ ପରାକ୍ରମ, ଧର୍ମଜ୍ଞ, ସକଳ ମାଣ୍ଡଳିକ ଓ ଲୋକପାଳ ପରିବେଷ୍ଟିତ ହୋଇ ସିଂହଦ୍ୱାରରେ ପହଞ୍ଚିଲା ବେଳକୁ ରାଜପୁରୋହିତ, ରାଜଗୁରୁ ରାଜଦମ୍ପତିଙ୍କୁ ପାଛୋଟି ଆଣିଲେ । ଏକଶତ ଆଠ ନର୍ତ୍ତକୀ ସ୍ୱର୍ଣ୍ଣଜରି ପୋଷାକରେ ବିଭୂଷିତ ହୋଇ ସମ୍ରାଟଙ୍କ ଆଗରେ ନୃତ୍ୟ ପରିବେଷଣ କରିବାକୁ ଲାଗିଲେ । ବନ୍ଦାପନା ମଣ୍ଡପରେ ଆଦିତ୍ୟ ଅର୍ଚ୍ଚନାର ସମସ୍ତ ବ୍ୟବସ୍ଥା ହୋଇ ସାରିଥିଲା । ମଣ୍ଡପ ଉପରେ ଏକ ସହସ୍ର ସ୍ୱର୍ଣ୍ଣକମଳରେ ସୂର୍ଯ୍ୟମଣ୍ଡଳ ସୁସଜ୍ଜିତ ହୋଇଥିଲା । ତୋରଣ ମାନଙ୍କରେ ଶ୍ୱେତପଦ୍ମର ଝରାମାନ ଶୋଭାପାଉଥିଲା । ପ୍ରତି ଖମ୍ବମୂଳରେ ସ୍ୱର୍ଣ୍ଣପ୍ରଦୀପମାନ ରୌପ୍ୟ ଖଚିତ ଗୁଖାମାନଙ୍କରେ ଥୁଆ ହୋଇଥିଲା । ସମ୍ରାଟ ଶୁଭ୍ରକ୍ଷୀରୋଦର ପାଟରେ ପରିଧାନ ଗ୍ରହଣ କରିଥିଲେ । ତାଙ୍କ ପ୍ରଶସ୍ତ ଛାତି ଉପରେ ବିଭିନ୍ନ ରତ୍ନର ଅଳଙ୍କାର ମେଘରେ ବିଜୁଳି ସଦୃଶ ଶୋଭାପାଉଥିଲା । ନୃତ୍ୟଗୁରୁ ସୋମରାଜୁ ହାତରେ ମଞ୍ଜିରା ଧରି ହଳଦିରଂଗ ପାଟ ଓ ଉତ୍ତରୀୟ ପିନ୍ଧି ମଞ୍ଜିରାର ଉକୁଟା ଉଚ୍ଚାରଣ କରି ନୃତ୍ୟାଙ୍ଗନାମାନଙ୍କୁ ନୃତ୍ୟ ନିର୍ଦ୍ଦେଶନା ଦେଉଥିଲେ ।

ଧୀରେ ଧୀରେ ସମଗ୍ର ମନ୍ଦିର ବେଢ଼ା ଲୋକାରଣ୍ୟ ହୋଇଗଲା । କିନ୍ତୁ ତା'ରି ଭିତରେ ରାଜକୀୟ ପଟୁଆର ସାଙ୍ଗରେ ଆସିଥିବା ଲୋକମାନେ ବାରିହୋଇ ପଡୁଥିଲେ । ହଜାରେ ସରିକି ଲୋକ ହେବେ । ଚତୁରଙ୍ଗ ସେନା ମନ୍ଦିର ବେଢ଼ା ବାହାରେ ଅତ୍ୟନ୍ତ ଦୃଢ଼ ଓ ଦମ୍ଭର ସହିତ ଜଗି ରହିଥିଲେ । ପଟୁଆରରେ ଯେଉଁମାନେ ସାମିଲ ହୋଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ପଥୁରିଆ କୁଳମୁଖ୍ୟ ଗଙ୍ଗା ମହାପାତ୍ର । କିଲାବୟାଳିଶି ବାଟିର ଦଳବେହେରା, ଶିବିର ତଦାରଖକାରୀ ଧର୍ମ ପଟ୍ଟନାୟକ, ମଧୁ ସାମନ୍ତ, ପାଇଟାଳ ପରିଛା ମହେଶ୍ୱର ବାହିନୀପତି, ରୋଷେଇ ପରିଛା ବିଶ୍ୱନାଥ ବାହିନୀପତି, ନଡ଼ିଆମଠର ମହନ୍ତ ଭାନୁ ଦାସ, କମାରଶ୍ରେଷ୍ଠ ବାସୁ ଓଝା, ଗୁପ୍ତସଂବାଦ ପରିବେଷକ ଚଣ୍ଡସିଂହ ଓ ଶୁଭଗୁପ୍ତ କଞ୍ଚୁକୀ, ତମ୍ବୁ ନିର୍ମାଣକାରୀ ରାମରାଘବ ଜେନା, ଗୋପ ମୁଦୁଲୀ, ଗୋରକ୍ଷକ ସୁଖୀ ମହାଭୋଇ, ତାମ୍ବୁଳ ଯୋଗାଡ଼ିଆ କୁରାଢ଼ ମଲ୍ଲ, ପିଠିଆ ଓ ଭାରୁଆମାନଙ୍କ ରକ୍ଷକ ତେରୁଣ୍ଡିଆର ବିଶ୍ୱମ୍ବର ପ୍ରଧାନ ସାମନ୍ତ, ମହାତୀର୍ଥ ମାନଙ୍କରୁ ଜଳ ଆଣିବା ଦାୟିତ୍ୱରେ ଥିବା ନରସିଂହ ଉଦ୍‌ଗାତା, ଭୋଗବିଷୋୟୀ ବାସୁଦେବ ମହାପାତ୍ର, ପଣାଭୋଗ ବଣ୍ଟନ ବେବର୍ତ୍ତା ଭଣ୍ଡାର ଚାଳକ ନରସିଂହ, ବଡ଼ ବିଷୋୟୀ ଗୋପୀନାଥ ବୁଢ଼ାଲେଙ୍କା, ସାନପରିଛା ଭଟ୍ଟନାରାୟଣ, ଲେଖାରକ୍ଷକ ଗଡ଼ବେଣ୍ଟପୁରର ଶ୍ୟାମବନ୍ଧୁ ପଟ୍ଟନାୟକ, ଧର୍ମ ପାଇକରାୟ, ଦିନୁ ପାଇକରାୟ, ମୃଦଙ୍ଗ କରଣ, ମହାମାତ୍ୟ ବ୍ରଜସୁନ୍ଦର ଚ୍ୟାଉ ପଟ୍ଟନାୟକ, ସେନାଧକ୍ଷ ବୀରଭୁଜଙ୍ଗ ଭ୍ରମରବର ରାୟ ଏଭଳି ଅସଂଖ୍ୟ ପଦାଧିକାରୀ । ସୂତ୍ରଧର ସଦାଶିବ ସାମନ୍ତରାୟ ମହାପାତ୍ରଙ୍କୁ ପଟୁଆର ଶୀରୋଭାଗରେ ଦେଖିନପାରି ମହାଶ୍ରମ ତାଙ୍କ କୁଶଳ ପୁଚ୍ଛା କରନ୍ତେ ବୈଦରାଜ ବୃନ୍ଦାବନ ଚନ୍ଦ୍ରଦତ୍ତ ସୂତ୍ରଧରଙ୍କ

ଶ୍ରମଜନିତ ଅସୁସ୍ଥତା ସମ୍ବାଦ ଜଣାକଲେ । ଦେଉଳ ଚୂଡ଼ାରେ କଳଶ ଯୋଡ଼ରେ ମଉଳମ ପ୍ରୟୋଗ କରୁଥିବା ଅବସ୍ଥାରେ ଆଘାତପ୍ରାପ୍ତ ହେଇ ପାଇକରାୟପୁର ଠାରେ ଅସ୍ଥାୟୀ ଛାଉଣୀରେ ଅବସ୍ଥାନ କରୁଥିବା ଓ ଚିକିତ୍ସିତ ହେଉଥିବା ଘଟଣା ସମ୍ରାଟଙ୍କ ଆଗରେ ଉପସ୍ଥାପନା କରାଗଲା । ଏ ଦୁଃସମ୍ବାଦରେ ମହାଶ୍ରମ ବିଚଳିତ ହେଲାଭଳି ମନେହେଲା । ସୂତ୍ରଧରଙ୍କୁ ଭେଟି କରିବାକୁ ଥିବା ରତ୍ନଶିରୋପା ଫାଲଗୁନ ପୂର୍ଣ୍ଣିମାରେ ଏକ ସ୍ୱତନ୍ତ୍ର ଉତ୍ସବରେ ଦିଆଯିବାକୁ ସ୍ଥିର ହେଲା ଓ ଭଣ୍ଡାର ରକ୍ଷକ ଏ ଦାୟିତ୍ୱରେ ରହିବା ପାଇଁ ରାଜାଦେଶ ହେଲା ।

ବନ୍ଦାପନା ମଣ୍ଡପରେ କୁଶାସନରେ ମହାଶ୍ରମ ଓ ପାଟମହାଦେବୀ ଉପବେଶନ କଲା ଉତ୍ତାରେ ପ୍ରତିଷ୍ଠା ବିଧି ଆରମ୍ଭ ହେଲା । ଖୁବ୍ ସମ୍ଭବତଃ ବିଗତରାତିରେ ମନ୍ଦିର ଗାତ୍ରରେ ସୃଷ୍ଟି ହେଇଥିବା ରକ୍ତଛିଟାଗୁଡିକୁ ଘୋଡେଇ ଦେବା ପାଇଁ ସମଗ୍ର ଦେଉଳଟିକୁ ରକ୍ତ କୁଙ୍କୁମରେ ଲାଞ୍ଛିତ କରିବା ପାଇଁ ରାଜଗୁରୁ ଚୁନରାମାନଙ୍କୁ ଆଦେଶ ଦେଲେ । ବେଢ଼ାରେ ଥିବା ଅର୍କବଟ ମୂଳରେ ବାର ଅୟୁତ ସୂର୍ଯ୍ୟମନ୍ତ୍ର ପାଠ କରାଗଲା । ଉତ୍ତର ମୁଣ୍ଡରେ ଥିବା ନିଶାପୀଠରେ ଲକ୍ଷ୍ମୀନାରାୟଣ ମୂର୍ତ୍ତି ସ୍ଥାପିତ ହେଲେ । ଦକ୍ଷିଣ ମୁଣ୍ଡ ନିଶାପୀଠରେ ରୁଦ୍ର ସୂର୍ଯ୍ୟଙ୍କ ମୂର୍ତ୍ତି, ପଶ୍ଚିମ ଦିଗରେ କ୍ଷେତ୍ରପାଳଙ୍କ ପ୍ରତିମା ସ୍ଥାପନା କରାଗଲା । ପ୍ରତିଷ୍ଠା ଉତ୍ସବରେ ଚଉରାଅଶି ଗୋଟି ମୂର୍ତ୍ତିପାଇଁ ଚଉରାଅଶି ଖଣ୍ଡପାଟ ବସ୍ତ୍ର ବ୍ୟବହୃତ ହେଲା । ପ୍ରତିଷ୍ଠା ବିଧି ଶେଷରେ ସମ୍ରାଟ ନରସିଂହ ଦେବ ସମସ୍ତ ଶିଳ୍ପୀ ମାନଙ୍କୁ ଧୋତିଯୋଡ଼ ଓ ପଦ୍ମଚିହ୍ନ ଥିବା ସ୍ୱର୍ଣ୍ଣମୁଦ୍ରା ଭେଟି ଦେଲେ ଏବଂ ଯାବତ୍‌ଚନ୍ଦ୍ରାର୍କେ ଭୋଗ କରିବା ପାଇଁ ଶହେଆଠଖଣ୍ଡ ଗ୍ରାମ ଦାନ କଲେ । ପ୍ରତିଷ୍ଠା ଉତ୍ସବ ସମାପନ କରିବା ପାଇଁ ଚୁନରା ନାୟକ ଷୋଡ଼ଶଧ୍ୱଜ ସାଙ୍ଗରେ ଧରି ମନ୍ଦିର ଉପରକୁ ଉଠିଲେ । ଧ୍ୱଜ ଦଣ୍ଡରେ ଧ୍ୱଜବନ୍ଧା ହେଲା । ଭେରୀ, ତୂରୀ ଓ ନିଶାଣର ଝଙ୍କାରରେ ମନ୍ଦିର ବେଢ଼ା ପ୍ରକମ୍ପିତ ହେଇ ଉଠିଲା । ସମ୍ରାଟ, ପାଟମହାଦେବୀ କସ୍ତୁରିକାମୋଦିନୀ ଏବଂ ରାଜପରିବାରର ଅନ୍ୟ ସଦସ୍ୟମାନେ ଧ୍ୱଜର ଅଗଫୁଲିକୁ ଉଠେଇ ଧରିଲେ ଏବଂ ମନ୍ଦିର ପରିକ୍ରମା କଲେ । ତା' ପୂର୍ବରୁ ତୀର୍ଥଜଳରେ ଧ୍ୱଜ ଅଗକୁ ବୁଡେଇ ସମଗ୍ର ଧ୍ୱଜଟିକୁ ଆର୍ଦ୍ର କରାହେଇସାରିଥିଲା । ଏହାହିଁ ସମଗ୍ର ମନ୍ଦିରକୁ ତୀର୍ଥଜଳରେ ସ୍ନାନ କରେଇବା ବିଧି । ପରିକ୍ରମା ଶେଷ ହେଲାପରେ ସୂତ୍ରଧର ନାରାୟଣ ମହାପାତ୍ର ଧ୍ୱଜଦଣ୍ଡରୁ ପତାକାକୁ କାଢ଼ିଆଣି ତାକୁ ସୋରାସୋରା କରି ଚିରି ସମସ୍ତ ଉପସ୍ଥିତ ଶିଳ୍ପୀ ଓ ଅନ୍ୟାନ୍ୟ ପଦାଧିକାରୀ ମାନଙ୍କୁ ଅର୍ପଣ କଲେ । ସେମାନେ ସେଗୁଡିକୁ ଶିରମଣ୍ଡନ ଭଳି ବ୍ୟବହାର କଲେ । ମହାଶ୍ରମ ଓ ପାଟମହାଦେବୀଙ୍କୁ ନେଇ ପଟୁଆର ପଦ୍ମକେଶର ଶିବିର ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲା ।

ସଦାଶିବ ସାମନ୍ତରାୟ ମହାପାତ୍ର ମୂର୍ଚ୍ଛାଯିବା ପରେ ଦଳେ କାରିଗର ତାଙ୍କୁ ଅଚେତ ଅବସ୍ଥାରେ ହାନ୍ଦୋଳାରେ ପକେଇ ପାଇକରାୟପୁରର ଅସ୍ଥାୟୀ ଛାଉଣୀକୁ ନେଇ ଆସିଲେ । ରାଜଗୁରୁଙ୍କ ଆଦେଶରେ ରାଜବୈଦ୍ୟ ବିଶ୍ୱମ୍ଭର ବୈଦ୍ୟଭାନୁ ପାଚନ ପ୍ରସ୍ତୁତ କରି ପିଆଇ ଦେବା ଫଳରେ ସଦାଶିବଙ୍କ ଚେତା ସାମାନ୍ୟ ଫେରିଆସିଲା । ସେ ଏବେ ପାଗଳ ଭଳି ପ୍ରଳାପ କରିବାକୁ ଲାଗିଲେ । ତାଙ୍କ ଅର୍ଦ୍ଧଉଚ୍ଚାରିତ ଅସ୍ପଷ୍ଟ ଶବ୍ଦମାନଙ୍କରୁ ବୁଝିହେଲା ଯେ ସେ ନିଜ ପତ୍ନୀ କନକ ମଞ୍ଜରୀଙ୍କ ଉପସ୍ଥିତି ଚାହୁଁଛନ୍ତି । ଏଣେ ମହାଶ୍ରମ ଗୁପ୍ତଚର ଅଧିକାରୀ ଶୁଭଗୁପ୍ତ କଞ୍ଚୁକୀ ମାଧ୍ୟମରେ ମନ୍ଦିର ବେଢ଼ାରେ ଘଟିଯାଇଥିବା ସମସ୍ତ ଅଘଟଣ ସଂପର୍କରେ ଅବଗତ ହେଲେ । ସେ କାରିଗରମାନଙ୍କ ତତ୍ତ୍ୱାବଧାରକ ସଦାନନ୍ଦଗୁପ୍ତ ପଟ୍ଟନାୟକଙ୍କ ସହିତ ଘଟଣାର ସତ୍ୟାସତ୍ୟ ସଂପର୍କରେ ଓ ତା ପରବର୍ତ୍ତୀ କାର୍ଯ୍ୟପନ୍ଥାକୁ ନେଇ ବିଚାର ବିମର୍ଶ କରିବା ପରେ ଏତେବଡ଼ ଅନ୍ୟାୟର ମୁକାବିଲା କରିବା ପାଇଁ ସୂତ୍ରଧର ସଦାଶିବଙ୍କୁ ଭେଟିବାକୁ ସ୍ଥିର କଲେ । ସେ ଦାମୋଦର ପଟ୍ଟନାୟକ, ଘନ ପଟ୍ଟନାୟକ, ବନ୍ଧୁ ମହାରଥ, ପାଇଟାଳ ପରିଛା, ମହେଶ୍ୱର ବାହିନୀପତି ଓ ଭୁବନେଶ୍ୱର ରାଜଗୁରୁଙ୍କୁ ନେଇ ଗୋଟିଏ ପଞ୍ଚକୋଠ ଗଠନ କରି ଧରମ ମହାପାତ୍ରଙ୍କ ମୃତ୍ୟୁର କାରଣ ନିଦାନ କରି ସାତଦିନ ଭିତରେ ଛାମୁରେ ଜଣା କରିବାକୁ ଆଦେଶ କଲେ ।

ତା ପରଦିନ ସକାଳୁ ସମ୍ରାଟ ଓ ପାଟମହାଦେବୀ କସ୍ତୁରୀକାମୋଦିନୀ ପାଇକରାୟପୁର ବିଜେ କରିବା ପାଇଁ ପାଟହାତୀକୁ ସଜବାଜ କରାଗଲା । ପଟୁଆରରେ ସମୁଦାୟ ଚାରୋଟି ହାତୀ, ଦଶଜଣ ମନ୍ଦିର ପାଇଟାଳ ଓ ପାଞ୍ଚଜଣ ପରିଚାରିକା ଯିବା ପାଇଁ ସ୍ଥିର ହେଲା । ମହାଶ୍ରମଙ୍କ ସହିତ ମାନଗୋବିନ୍ଦ ରାଜଗୁରୁ, ସୂତ୍ରଧର ଗଙ୍ଗା ମହାପାତ୍ର, ଗଦାଧର ମହାପାତ୍ର, ଦାମ ମହାପାତ୍ର, ଭୁବନେଶ୍ୱର ବିନ୍ଧାଣିରତ୍ନ ଓ ଅପର୍ତ୍ତି ମହାରଣା ଯିବାପାଇଁ ରାଜାଦେଶ ହେଲା । ପଟୁଆରରେ ମହାଶ୍ରମ ବଡ଼ ଚିନ୍ତିତ ଦିଶୁଥାନ୍ତି । ଶ୍ରମଲାଘବ ପାଇଁ ପଟୁଆର ଗୋଟିଏ ବଟବୃକ୍ଷମୂଳେ ଅଟକିଲା । ମହାଶ୍ରମ ମାନଗୋବିନ୍ଦ ରାଜଗୁରୁଙ୍କ ପରାମର୍ଶ ଲୋଡିଲେ । ପଞ୍ଚକୋଠଙ୍କ ନିଷ୍ପତ୍ତିକୁ ଅପେକ୍ଷା କରିବା ଉଚିତ ହେବ ବୋଲି ସବିନୟ ରାଜଗୁରୁ ନିଜ ମତ ଦେଲେ । ପଥର କାରିଗରମାନେ କୁଳର ମାନରକ୍ଷା ଦୃଷ୍ଟିରୁ ଘଟଣାଟିକୁ ଚପେଇ ଦେବାପାଇଁ ଚେଷ୍ଟା କରୁଥାନ୍ତି । ମୃତ୍ୟୁଜନିତ ଅଶୁଭ ପ୍ରଭାବରୁ ମନ୍ଦିରକୁ ରକ୍ଷା କରିବା ଉଦ୍ଦେଶ୍ୟରେ ରବିନାରାୟଣ ତୃପ୍ତିହୋମ କରିବା ପାଇଁ ରାଜଗୁରୁ ଆପାତତଃ ନିଷ୍ପତ୍ତି ନେଇ ମହାଶ୍ରମଙ୍କୁ ଜଣା କଲେ । ଆସନ୍ତା ଗୁରୁବାର ମାଘଶୁକ୍ଳ ଏକାଦଶୀ ଦିନ ବନ୍ଧାପନା ମଣ୍ଡପରେ ରିଷ୍ଟ ନିବାରଣ ହୋମ ଅନୁଷ୍ଠାନ ହେବବୋଲି ସ୍ଥିର ହେଲା ।

ଦିନ ଦି'ପହର ବେଳକୁ ମହାଶ୍ରମଙ୍କ ପଟୁଆର ପାଇକରାୟପୁରରେ ପହଞ୍ଚିଲା । ହାତୀରୁ ଓହ୍ଲେଇ ସମ୍ରାଟ ଓ ପାଟମହାଦେବୀ ସୂତ୍ରଧରଙ୍କର ଖଞ୍ଜାରେ ବିଜେ ହେଲେ । ସୂତ୍ରଧର ସଦାଶିବ ସାମନ୍ତରାୟ ସାଦା କାଠ ପଲଙ୍କ ଉପରେ ଶୋଇ ରହିଥିଲେ । ତାଙ୍କ ଗୋଡ଼ ପାଖରେ ଭାର୍ଯ୍ୟା କନକ ମଞ୍ଜରୀ ବିଷଣ୍ଣ ମନରେ ବସି ରହିଥିଲେ । ତାଙ୍କ ଆଖିରୁ ଅଶ୍ରୁ ଅନବରତ ବହି ଚାଲିଥିଲା । ମହାଶ୍ରମଙ୍କ ଦର୍ଶନ ପାଇଁ ସେ ପଲଙ୍କ ଛାଡ଼ି ଉଠି ଠିଆ ହେଲେ । ତୁହାକୁ ତୁହା କୋହ ତାଙ୍କୁ ବିବ୍ରତ କରିଦେଉଥାଏ । ପୁତ୍ରଶୋକରେ ଅଖିଆ, ଅପିଆ ସେ ଶ୍ରୀହୀନ ଦେଖାଯାଉଥାନ୍ତି । ସମ୍ରାଟଙ୍କ ଆଗରେ ନିଜ ଦୁଃଖ ନିବେଦନ କରିବା ପାଇଁ ଗୋଡ଼ କାଢ଼ି ଆଗେଇ ଆସିବାକୁ ଚେଷ୍ଟା କରି ମଧ ସାମର୍ଥ୍ୟ ଯୋଗାଡ଼ କରି ନପାରି ସେ ସମ୍ରାଟଙ୍କ ପାଦତଳେ କଚାଡି ହୋଇ ପଡ଼ିଗଲେ । ତା'ପରେ କନକ ମଞ୍ଜରୀ ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ । କନକ ମଂଜରୀଙ୍କୁ ତଳୁ ଉଠେଇ ପାଟମହାଦେବୀ ପ୍ରବୋଧନା ଦେବା ପାଇଁ ଚେଷ୍ଟା କଲେ । ପରିସ୍ଥିତି ବଡ଼ କରୁଣାନ୍ତକ ମନେହେଲା । ଅବଶ୍ୟ ଏଭଳି କିଛି ଘଟିପାରେ ବୋଲି ସମସ୍ତେ ଆଶଙ୍କା କରୁଥିଲେ । ସଦାଶିବ ମହାଶ୍ରମଙ୍କୁ ହାତଠାରି କିଛି କହିବାକୁ ଚେଷ୍ଟା କରୁଥିଲେ । ଏହା ବାରିପାରି ମହାଶ୍ରମ ସଦାଶିବଙ୍କ ମୁଣ୍ଡପଟେ ପଲଙ୍କ ଉପରେ ବସିଲେ ଓ ସୂତ୍ରଧରଙ୍କ ମୁଣ୍ଡ ଆଉଁଷିବାରେ ଲାଗିଲେ । ତାଙ୍କ ମୁହଁ ସାମାନ୍ୟ ସତେଜ ଦେଖାଗଲା । ସଦାଶିବ ସାମାନ୍ୟ ଆଶ୍ୱାସନା ପାଇଲେ । ବୈଦ୍ୟଙ୍କ ବାରଣସତ୍ୱେ ପଲଙ୍କରୁ ଉଠି ତଳେ ଠିଆ ହେବା ପାଇଁ ଚେଷ୍ଟା କରି ବିଫଳ ହେଲେ । ତାଙ୍କ ଦେହରେ ଖଇଫୁଟା ତାତି ଭରି ହୋଇ ରହିଥିଲା । ସେ ଉଚ୍ଚ ରକ୍ତଚାପ ରୋଗରେ ମଧ ସଢୁଥିଲେ । ରକ୍ଷା ହେଲା ଦୁଇଜଣ ପାଇଟାଳ ସଦାଶିବ ପଡ଼ିଯିବା ଅବସ୍ଥାରୁ ଧରିନେଲେ ।

ମହାଶ୍ରମ ଓ ପାଟମହାଦେବୀ ଉଭୟେ ସଦାଶିବ ଓ କନକ ମଂଜରୀଙ୍କ ଅବସ୍ଥା ହୃଦୟଙ୍ଗମ କରି ଅସ୍ଥିର ହୋଇଉଠିଲେ । ସୂର୍ଯ୍ୟ ମନ୍ଦିର ଭଳି କାରୁକାର୍ଯ୍ୟ ବିମଣ୍ଡିତ ଏତେବଡ଼ ପ୍ରାସାଦର ନିର୍ମାତା ବୋଲି ମନରେ ଯେଉଁ ଦମ୍ଭ ଓ ଅଭିମାନ ଥିଲା, ଧରମାର ଆତ୍ମହତ୍ୟା ସେଥିରେ ଭଟ୍ଟା ଆଣିଦେଇଥିଲା । ଏବେ ପୁଣି ସେମାନେ ସ୍ୱଚକ୍ଷୁରେ ଗୋଟିଏ ନିର୍ବାପିତ ଜୀବନର ସମବେଦନାରେ ସନ୍ତୁଳିତ ଦୁଇଟି ଆତ୍ମୀୟଙ୍କ ଦୁଃଖ ଓ ସନ୍ତାପ ଦେଖିଲେ, ହେଜିଲେ । ସେ ଦୁହେଁ ବାହାର ଅଗଣାକୁ ଆସି ମାନଗୋବିନ୍ଦ ରାଜଗୁରୁ, ସୂତ୍ରଧର ଗଙ୍ଗା ମହାପାତ୍ର ଓ ରାଜବୈଦ୍ୟ ବିଶ୍ୱମ୍ଭର ବୈଦ୍ୟଭାନୁଙ୍କ ସହିତ ପରାମର୍ଶ କଲେ । ରାଜବୈଦ୍ୟ ସଦାଶିବଙ୍କ ସ୍ୱାସ୍ଥ୍ୟାବସ୍ଥା ସଂପର୍କରେ ସମ୍ରାଟଙ୍କ ନିକଟରେ ବିଷଦ ବିବରଣୀ ଦେଲେ । ସେ ମତଦେଲେ ହୁଏତ ଚିକିତ୍ସା ପରେ ସଦାଶିବଙ୍କ ସ୍ୱାସ୍ଥ୍ୟରେ ଉନ୍ନତି ଦେଖାଯାଇପାରେ କାରଣ ସେ ସ୍ୱର୍ଣ୍ଣଭସ୍ମ ପ୍ରୟୋଗ ଆରମ୍ଭ କରିଦେଇଛନ୍ତି । କିନ୍ତୁ ମାନସିକ ସ୍ତରରେ ସେ ଯେଉଁ ଆଘାତ ପାଇଛନ୍ତି, ତା'ର କ୍ଷତ ଉପଶମ ହୋଇନପାରେ । ସଦାଶିବ ମଝିମଝିରେ ଯେଭଳି ପ୍ରଳାପ କରୁଛନ୍ତି ସେଥିରୁ ଅନୁମାନ କରିହେଉଛି ଯେ ସେଥିରେ କୌଣସି ବିଗତ ବିଷୟ ପ୍ରତି ଆଉ ଅନୁଶୋଚନା ନାହିଁ ବରଂ ଅଛି କେବଳ ଭବିତବ୍ୟର ଏକ କ୍ରୂର ଅଟ୍ଟହାସ । ମାନବିକ ମୂଲ୍ୟବୋଧର ଅଭାବରେ

ମଣିଷ ପଶୁ ପାଲଟି ଯିବାର ଏକ ଅସ୍ୱାଭାବିକ ପରିଣତି । ଏଭଳି ମାନସିକ ସ୍ଥିତି ନେଇ ଜଣେ ସୁସ୍ଥ ମଣିଷ ଭାବେ ବଞ୍ଚିନପାରେ । ସଦାଶିବଙ୍କ ଉଜ୍ଜ୍ୱଳ ଭବିଷ୍ୟତର ଆଶା ଦେଖିପାରୁ ନାହାନ୍ତି ବୋଲି ବୈଦ୍ୟ ନିଜ କଣ୍ଠସ୍ୱରକୁ ଆହୁରି ଅବଦମିତ କରି ମହାଶ୍ରମଙ୍କୁ ଜଣାକଲେ । ସମ୍ରାଟଙ୍କ ଧମନୀରେ ପ୍ରବାହିତ ବୀର ରକ୍ତରେ ଶୀତଳ ପ୍ରବାହର କଣିକା ଖେଳିଗଲା । ତାଙ୍କର ଅତିପ୍ରିୟ ସୂର୍ଯ୍ୟ ମନ୍ଦିରକୁ ବସ୍ତୁତଃ ନିର୍ମାଣ କରିଥିବା ସଦାଶିବଙ୍କୁ ସେ କଳିଙ୍ଗ ଦେଶର କାରିଗରଙ୍କ ମଧ୍ୟରେ ସ୍ୱୟଂ କୋଣାର୍କ ବୋଲି ବିବେଚନା କରୁଥିଲେ । ସେ ଦୃଢ଼ ନିଶ୍ଚିତ ଥିଲେ ଯେ କୋଣାର୍କର ସୂର୍ଯ୍ୟ ମନ୍ଦିର ଯାବତ୍ ଚନ୍ଦ୍ରାର୍କେ ବିଶ୍ୱରେ ତାଙ୍କର ଓ କଳିଙ୍ଗ ଶିଳ୍ପୀର ଅମ୍ଳାନ କୀର୍ତ୍ତିଧ୍ୱଜା ଟେକିଧରିବ । କୋଣାର୍କ ସ୍ୱୟଂ ସୂର୍ଯ୍ୟଙ୍କ ଭଳି ଦେଦୀପ୍ୟମାନ ହେବ, ଦୋଷମୁକ୍ତ ହେବ, ଶୈଳ୍ପିକ ତେଜ ଓ ପରାକାଷ୍ଠାରେ ବିଶ୍ୱବନ୍ଦିତ ସୌଧ ହୋଇ ଗଙ୍ଗ ରାଜା, କଳିଙ୍ଗ ଶିଳ୍ପୀ ଓ ଉତ୍କଳ ଦେଶର ଜୟଗାନ କରୁଥିବ ।

ମହାଶ୍ରମ ବିଧିବ୍ୟବସ୍ଥାରେ କିଛି ତ୍ରୁଟି ରହିଯାଇଥିବାର ସନ୍ଦେହ କରି ଭୂମିପୂଜା, ମଙ୍ଗଳାରୋପଣ, ଭିତ୍ତିନିର୍ମାଣର ସମସ୍ତ ଘଟଣାବଳିକୁ ସ୍ମୃତିରେ ଦୋହରେଇବାକୁ ଲାଗିଲେ । ମନ୍ଦିର ନିର୍ମାଣର ଇତିହାସ ରାଜ୍ୟାଭିଷେକର ପଞ୍ଚମ ଅଙ୍କରୁ ଶୁଭାରମ୍ଭ ଓ ଅଷ୍ଟାଦଶ ଅଙ୍କରେ ମନ୍ଦିର ଓ ମୂର୍ତ୍ତି ପ୍ରତିଷ୍ଠା ସାଙ୍ଗରେ ଶେଷ । ଅବଶ୍ୟ ଭୂମିପୂଜା ପୂର୍ବ ଛଅବର୍ଷର ନକ୍ସା ପ୍ରସ୍ତୁତି, ପଥର ଯୋଗାଡ଼ ଓ କାରିଗରଙ୍କୁ ଠାବ କରିବାର ପ୍ରୟାସ-ଅବଧିକୁ ସେ ଏତେ ପ୍ରାଞ୍ଜଳ ଭାବେ ମନେ ପକେଇ ପାରୁନାହାନ୍ତି । ସେଥିରେ ହୁଏତ କୌଣସି ଅଖିଞ୍ଚା ରହିଯାଇଛି ବୋଲି ମନେ ହେଉଛି ।

ମହାଶ୍ରମ ଅସରନ୍ତି ଚିନ୍ତାର ଜାଲ ଭିତରେ ଛନ୍ଦି ହୋଇଗଲେ । ସେ ତ ସୂର୍ଯ୍ୟଦେବଙ୍କୁ ଏ ବିଶ୍ୱର ନିୟନ୍ତା, ସୃଷ୍ଟି ଏବଂ ପାଳନକର୍ତ୍ତାରୂପରେ ଧ୍ୟାନରେ ପାଇଥିଲେ । ସିଏ ମାତ୍ର ବାରବର୍ଷର ନିର୍ମାଣ ଇତିହାସର ଗାଥା ପଥରରେ ରଚିବା ପାଇଁ ଚାହିଁନଥିଲେ, ସିଏ ନିଷ୍ପତ୍ତି ନେଇଥିଲେ ତିନି ସହସ୍ର ବର୍ଷର ମନ୍ତ୍ରଗାଥା; ନଭଃଶୂନ୍ୟ, ମହାଶୂନ୍ୟ ଓ ତେଜସ୍ୱଶୂନ୍ୟ ରୂପର ଉଜ୍ଜ୍ୱଳ ପ୍ରତିବିମ୍ବ ହେବ ତାଙ୍କରି କୋଣାର୍କ ମନ୍ଦିର । ବୈଦିକ ଋଷିଙ୍କ ଉଚ୍ଚାରିତ ମନ୍ତ୍ରଧ୍ୱନି ହିଁ ପଥରକୁ କାବ୍ୟରେ ପରିଣତ କରିଦେଇ କାଳ କାଳକୁ ଅକ୍ଷୟ କୀର୍ତ୍ତି ରଖିଦେଇଯିବ । ସିଏ କେବଳ ମୈତ୍ରୀ ଉପନିଷଦର ବର୍ଣ୍ଣନ ଅଧ୍ୟୟନ କରିନାହାନ୍ତି, ବରଂ ପ୍ରଶ୍ନ ଓ ବୃହଦାରଣ୍ୟକ ଉପନିଷଦର ନିର୍ଯ୍ୟାସକୁ ମନନ କରି ସୂର୍ଯ୍ୟଙ୍କୁ ଆଧ୍ୟାତ୍ମିକତାର ଚରମ ନିଦର୍ଶନ ରୂପେ ଗ୍ରହଣ କରିଛନ୍ତି ।

ମନ୍ଦିର ନିର୍ମାଣ ପୂର୍ବରୁ ମହାଶ୍ରମ ନିଜ ପରିକଳ୍ପନାକୁ ଶୁଦ୍ଧ ଓ ରସାଣ କରିବା ପାଇଁ ବହୁ ଯୋଗୀ ଓ ସିଦ୍ଧଙ୍କ ଉପଦେଶ ସ୍ୱୀକାର କରିଛନ୍ତି । ସୂର୍ଯ୍ୟଙ୍କୁ ମୂଳାଧାର ଚକ୍ରରେ ସ୍ଥାପନା କରି ସେଠାରୁ ଭାବରେ ଭାବରେ ପ୍ରାଣକୁ ଉତ୍ଥିତ କରି ବିଶ୍ୱାଧାର ଚକ୍ରରେ ପହୁଞ୍ଚେଇବାର କଠୋର ସାଧନା କରିଛନ୍ତି । କୋଣାର୍କ ମନ୍ଦିରର ନିର୍ମାଣ ତାଙ୍କ ସୂର୍ଯ୍ୟ ସାଧନାର ଫଳ ।

ସୂତ୍ରଧର ସଦାଶିବ ସାମନ୍ତରାୟ ମହାପାତ୍ର ସାଧାରଣ ବିନ୍ଧାଣି ନଥିଲେ, ସେ ଥିଲେ ଶାସ୍ତ୍ରଜ୍ଞ, ତନ୍ତ୍ରସାଧକ ଓ ଜ୍ଞାନଗର୍ଭା । ଏଣୁ ମହାଭାସ୍କରଙ୍କ ପୂଜାବିଗ୍ରହ ନିର୍ମାଣ ଦାୟିତ୍ୱ ସମ୍ରାଟ ତାଙ୍କୁ ହିଁ ଦେଇଥିଲେ । ସଦାଶିବ ହିଁ ତାଙ୍କୁ କହିଥିଲେ ଯେ ତନ୍ତ୍ରରେ ସୂର୍ଯ୍ୟବିଗ୍ରହର ବର୍ଣ୍ଣନା ଅଲୌକିକ । ସୂର୍ଯ୍ୟମଣ୍ଡଳ ତିନୋଟି ସ୍ତରରେ ବିରାଜମାନ । ସବାତଳ ସ୍ତର ହେଲା ତୈଜସ ଏବଂ ଏହା ଗତିଶୀଳ, ମଧ୍ୟସ୍ତର, ପ୍ରଜ୍ଞା ହେଲା ସମସ୍ତ ପ୍ରାଣୀମାନଙ୍କର ଶ୍ୱାସ ଓ ପ୍ରଶ୍ୱାସର ନିୟାମକ ଓ ଉର୍ଦ୍ଧ୍ୱସ୍ତର ହେଲା ବ୍ରହ୍ମସ୍ୱରୂପ । ସବାତଳ ସ୍ତରରେ ଅଶ୍ୱ ଓ ସୂର୍ଯ୍ୟଦେବଙ୍କ ପାଦ ଦୃଶ୍ୟ ହୁଏ ଯାହା  ଅବୋଧ, ଅପ୍ରମେୟ ଓ ଅତଳ । ମଧ୍ୟସ୍ତରରେ ପୃଥିବୀ ବିକଶିତ ଏବଂ ଉପରସ୍ତର ହେଉଛି ହିରଣ୍ୟଗର୍ଭ ମଣ୍ଡଳ ଯେଉଁଠୁ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ଉତ୍ପତ୍ତି । ଏବେ ସଦାଶିବଙ୍କ ଅବସ୍ଥା ଦେଖିଲେ ମନେହେଉନି ସିଏ ସେହି ପ୍ରଜ୍ଞାବାନ ଶିଳ୍ପୀ ଯିଏ ମହାଭାସ୍କର ବିଗ୍ରହର ସୃଷ୍ଟିକର୍ତ୍ତା ।

ମହାଶ୍ରମ କୋଣାର୍କ ମନ୍ଦିର ନିର୍ମାଣ, ସୂତ୍ରଧର ସଦାଶିବଙ୍କ ଶୈଳ୍ପିକ କୃତିତ୍ୱ ଏବଂ ଏବେକାର ତାଙ୍କର ଦୟନୀୟ ପରିସ୍ଥିତିକୁ ନେଇ ଭାବନା ରାଜ୍ୟର ଅତଳ ତଳ ଭିତରେ ହଜିଯାଇଛନ୍ତି । ସେ ଭାବୁଛନ୍ତି ସୂର୍ଯ୍ୟଙ୍କ କ୍ଷେତ୍ର କୋଣାର୍କରେ ଏଭଳି ଅସ୍ୱାଭାବିକ ଘଟଣା କିଭଳି ସମ୍ଭବ ହେଇପାରିଲା । ଏହାରି ମୂଳରେ କିଏ, କାହାର କରାମତି ? ଏତେବଡ଼ ଯଶଃରେ ବିଘ୍ନ ପହୁଞ୍ଚେଇବା ପାଇଁ କିଏ ବା ଅପଚେଷ୍ଟା କଲା ?

ଧର୍ମ ଯିଏ ସୂର୍ଯ୍ୟ ସିଏ । ଏଣୁ ସଦାଶିବ ନିଜପୁତ୍ରର ନାଁ ରଖିଥିଲେ ଧର୍ମ । ଏଣେ ଧର୍ମସୂର୍ଯ୍ୟଙ୍କ ପ୍ରାସାଦ ନିର୍ମାଣ  ପାଇଁ କୋଣାର୍କ ବାହାରିଲେ । ତେଣେ ଆସନ୍ନ ପ୍ରସବ ସନ୍ତାନର ନାମ ନିର୍ଦ୍ଧାର୍ଯ୍ୟ କରିଥିଲେ ଧର୍ମ । ନିଜ ଶିବିରରେ ସଦାଶିବ ଧର୍ମଙ୍କ ମୂର୍ତ୍ତିଟିଏ ପ୍ରତିଷ୍ଠା କରି  ପ୍ରତ୍ୟହ ପୂଜା ଅର୍ଚ୍ଚନା କରୁଥିଲେ । କେବଳ ସିଏ ନୁହଁନ୍ତି ସବୁକାରିଗରଙ୍କ ଏହି ବିଗ୍ରହଟି ଥିଲା ଆରାଧ୍ୟ ଦେବତା । ସମସ୍ତେ ତାଙ୍କୁ ନାଁ ଦେଇଥିଲେ ଧର୍ମ ନିରଞ୍ଜନ ଠାକୁର । କିଏ କିଏ ମଧ୍ୟ କହୁଥିଲେ ବିରଞ୍ଚିନାରାୟଣ ଧର୍ମ ଦେବତା । ଏହା ଚତୁର୍ଦ୍ଧାମୂର୍ତ୍ତି ନଥିଲେ, ଥିଲେ ସୂର୍ଯ୍ୟାକାର ଏକ ଶୁଭ୍ରପଥର । ଏହି ବିଗ୍ରହର ରହସ୍ୟଭେଦ କରିବା ପାଇଁ ସମ୍ରାଟ ଅନେକଥର ଭାବିଥିଲେ । ସଂଭ୍ରମ ହେତୁ ପଚାରିବା ଉଚିତ ମନେ କରିନଥିଲେ । ଏବେ ତ ସଦାଶିବ ଅସୁସ୍ଥ । ସମ୍ରାଟ ଆଉ କାହାକୁ ବା ପଚାରିବେ ?

ଏ ଦେଶର ସୂର୍ଯ୍ୟପୂଜା ପରମ୍ପରା ହିଁ ବିଚିତ୍ର । ମନ୍ଦିର ସିନା ପ୍ରତ୍ୟକ୍ଷ ଠାକୁରଙ୍କ ପ୍ରତୀକ, କିନ୍ତୁ ସୂର୍ଯ୍ୟ ଠାକୁରଙ୍କୁ ମନ୍ଦିର ଭିତରେ ବାନ୍ଧି ରଖିବାର ପରିକଳ୍ପନା ହିଁ ଦୁଃସାହସିକତା । ଏଇଥି ପାଇଁ କ'ଣ ଏଭଳି ଅଘଟଣ ଘଟିଲା ? ମହାଶ୍ରମ ଚିନ୍ତାରାଜ୍ୟରେ ବୁଡ଼ି ରହି କିଛି କୂଳକିନାରା ପାଉନାହାନ୍ତି । ସଦାଶିବଙ୍କ ହଠାତ୍ କାଶ ଉଠେଇଲା । ମହାଶ୍ରମ ମୁଣ୍ଡଟେକି ସେ ଆଡ଼କୁ ଚାହିଁଲେ । ରାଜବୈଦ୍ୟ ସାମାନ୍ୟ ବ୍ୟସ୍ତ ହେଲାଭଳି ଲାଗିଲା । ତାଙ୍କ ଶ୍ମଶ୍ରୁଯୁକ୍ତ ଉଜ୍ଜ୍ୱଳ ମୁଖମଣ୍ଡଳରେ ଚିନ୍ତାର ରେଖା ଛାଇ ହେଇଗଲା । ତା'ର କାରଣ ହେଲା କାଶରେ ଦଲକାଏ ରକ୍ତ । କନକ ମଞ୍ଜରୀ ସ୍ୱାମୀଙ୍କ ମୁଣ୍ଡକୁ ଅତି

ଯତ୍ନର ସହିତ ଟେକି ଧରି ତାଙ୍କ ଓଠରୁ ରକ୍ତମିଶା କଫ ପୋଛି ଆଣିଲେ । ସଦାଶିବ ନିଃଶ୍ୱାସ ନେବାରେ କଷ୍ଟ ଅନୁଭବ କଲେ । ରାଜବୈଦ୍ୟ ପ୍ରମାଦ ଗଣିଲେ । ଏଭଳି ଲକ୍ଷଣ ମୋଟେ ଉତ୍ସାହଜନକ ନୁହେଁ ବରଂ ଉଦ୍‌ବେଗଜନକ । ରାଜବୈଦ୍ୟ ମହାଶ୍ରମଙ୍କୁ କୋଠରି ବାହାରକୁ ବିଜେହେବାକୁ ଅନୁରୋଧ କରି ରୋଗର ଗମ୍ଭୀରତା ଓ ରୋଗୀର ଅନ୍ତଃନାଳୀର ଦହନରୁ ଉପୁଜୁଥିବା ରକ୍ତରକ୍ଷରଣ ବନ୍ଦ କରିବା ପାଇଁ ପାରଦ ଭସ୍ମ ପ୍ରୟୋଗ ବ୍ୟତୀତ ଆୟୁର୍ବେଦ ଚିକିତ୍ସାରେ ଅନ୍ୟପନ୍ଥା ନାହିଁ ବୋଲି ଜଣାକଲେ । କିନ୍ତୁ ରୋଗୀ ଯେଉଁ ଅବସ୍ଥାରେ ପହଞ୍ଚିଲାଣି ସେତେବେଳେ ପାରଦଭସ୍ମ ପ୍ରୟୋଗର ସୁଫଳ ଆଶା କରିବା ବୃଥା । ଅତଏବ ଭାଗ୍ୟ ଓ ଭଗବାନଙ୍କ ଉପରେ ସବୁକଥା ସମର୍ପି ଦେବା ଉଚିତ ହେବ ।

ବେଳ ରତ ରତ ହେଲା । ପାଟମହାଦେବୀ କସ୍ତୁରୀକାମୋଦିନୀ ପୁରୁଷୋତ୍ତମ କ୍ଷେତ୍ରକୁ ଯାଇ ଜଗନ୍ନାଥଙ୍କ ଦର୍ଶନ କରିବାର ଅଭିଳାଷ ରଖିଥିଲେ । ଏଭଳି ଏକ ସଙ୍ଗିନ ପରିସ୍ଥିତିରେ ମହାରାଜାଙ୍କୁ ନିଜ ମନକଥା କହିବା ପାଇଁ ସେ ଉଚିତ ମନେକଲେ ନାହିଁ । ଆପାତତଃ ନୀରବ ରହିଲେ । ମହାରାଜା ନରସିଂହ ସୂତ୍ରଧର ସଦାଶିବଙ୍କୁ ପ୍ରାଣଠାରୁ ବଳି ସ୍ନେହ ଆଦର କରୁଥିଲେ ଏଣୁ ସଦାଶିବଙ୍କ ସ୍ୱାସ୍ଥ୍ୟ ନେଇ ଉଦ୍‌ବିଗ୍ନ ହେବା ସହ ଏଭଳି ଅବସ୍ଥାରେ ତାଙ୍କୁ ଛାଡ଼ିଯିବା ପାଇଁ ଚାହୁଁନଥିଲେ ।

କିଛି ସମୟ ଉତ୍ତାରେ ଏକ ଅଦ୍ଭୁତ ଘଟଣା ଘଟିଲା । ସଦାଶିବ ପଲଙ୍କ ଉପରେ କଡ଼ଲେଉଟାଇଲେ ଏବଂ ଉଠି ବସିବାକୁ ଇଙ୍ଗିତ ଦେଲେ । ଏତିକିରେ ଖଞ୍ଜା ଭିତରେ ସାମାନ୍ୟ ଆଶାର ସଂଚାର ହେଲା । ମନେହେଲା ପତ୍ରଝଡ଼ା ଦେଇଥିବା ଗଛଟିରେ ପତ୍ର କଅଁଳୁଛି । ଭାର୍ଯ୍ୟା କନକ ମଂଜରୀ ଏବଂ ପାଟମହାଦେବୀଙ୍କ ଦୁଇଜଣ ପରିଚାରିକା ସଦାଶିବଙ୍କୁ ସହାୟତା ଦେବା ପାଇଁ ଉଦ୍ୟତ ହେଲେ । ସତକୁ ସତ ଭରସା ପାଇଲାରୁ ସିଏ କନକ ମଂଜରୀଙ୍କ ଛାତି ଉପରେ ଭରାଦେଇ ବସିଲେ ଏବଂ ମହାଶ୍ରମ ଓ କସ୍ତୁରୀକାମୋଦିନୀଙ୍କୁ ଚିହ୍ନିପାରି ହାତଯୋଡ଼ି ପ୍ରଣାମ କଲେ । ସିଏ କିଛି ନିଜ ମନକଥା ବ୍ୟକ୍ତ କରିବା ପାଇଁ ଚାହୁଁଥିଲେ କିନ୍ତୁ ରାଜବୈଦ୍ୟ ତାଙ୍କୁ ନୀରବ ରହିବା ପାଇଁ ଇଙ୍ଗିତ ଦିଅନ୍ତେ ସଦାଶିବ ସେଥିରୁ କ୍ଷାନ୍ତ ହେଲେ । ମହାଶ୍ରମ, ପାଟମହାଦେବୀ ଓ ଉପସ୍ଥିତ ସମସ୍ତେ ସଦାଶିବଙ୍କୁ ଉଠି ବସିବା ଦେଖି ହର୍ଷ ପ୍ରକାଶ କଲେ ।

ମହାରାଜା କନକ ମଂଜରୀଙ୍କ ସହିତ କିଛି ଜରୁରୀ ବାର୍ତ୍ତା ବିନିମୟ କଲାପରେ ସଦାଶିବଙ୍କ ଚିକିତ୍ସା ଓ ସୂତ୍ରଧରଙ୍କ ପରିବାରର ଅଭ୍ୟୁଦୟ ପାଇଁ ସମସ୍ତ ରାଜ ସହାୟତା ମିଳିବ ଏବଂ ଯେଉଁମାନଙ୍କ ଚକ୍ରାନ୍ତରେ ଧରମ ମହାପାତ୍ରଙ୍କୁ ଆତ୍ମହତ୍ୟା କରିବାକୁ ପଡ଼ିଲା, ସେମାନଙ୍କୁ ଠାବ କରି ଉଚିତ ଦଣ୍ଡ ବିଧାନ କରାଯିବ ବୋଲି ଘୋଷଣା କରି ପୁରୁଷୋତ୍ତମ ବାହୁଡ଼ିଲେ । ମହାରାଜାଙ୍କ ଅନୁମତି ନେଇ ସୂତ୍ରଧର ଗଙ୍ଗା ମହାପାତ୍ର, ଗଦାଧର ମହାପାତ୍ର ଓ ଅପର୍ତ୍ତି ମହାରଣା ସଦାଶିବଙ୍କ ଯତ୍ନ ନେବା ପାଇଁ ପାଇକରାୟପୁର ଠାରେ ଅଟକିଲେ । ତାଙ୍କୁ ପଦ୍ମକେଶର ଶିବିରକୁ ଫେରେଇ ନେବା ପାଇଁ ହାତୀଆଳ ଓ ଗୋଟିଏ ହାତୀ ରହିଲା ।

ମହାରାଜା ପୁରୁଷୋତ୍ତମ ଲେଉଟିଗଲାପରେ ଖଞ୍ଜାଘରେ କୋଳାହଳ କମିଗଲା । ସଦାଶିବ ବେଶ୍ ଅଳ୍ପ ସମୟ ଯାଏଁ କନକ ମଂଜରୀଙ୍କ ଛାତି ଉପରେ ଭରାଦେଇ ଆଉଜି ବସିଲେ । ଏମିତିରେ ସଦାଶିବଙ୍କ ଚେହେରା ଖୁବ୍ କୁନ୍ଦାକରା ପଥର ମୂର୍ତ୍ତି ଭଳି । ଏବେ ଅସୁସ୍ଥତାରୁ ମୁହଁରେ ରୁଢ଼ ଭର୍ତ୍ତି । ଆଖି ଦୁଇଟି କୋରଡ଼ ଭିତରେ ପଶିଯାଇଛି । ଗାଲ ଠାକୁଆ ପଡିଯାଇଛି । ରାଜବୈଦ୍ୟ ମହୁରେ ମହୌଷଧି ଘୋଟି ସଦାଶିବଙ୍କୁ ଚଟେଇ ଦେଲେ । ସଦାଶିବ ଏତେ ସମୟ ବସିବା ପରେ କ୍ଳାନ୍ତ ଅନୁଭବ କଲେ ଓ ଶୋଇପଡିବାକୁ ଇଚ୍ଛା ପ୍ରକାଶ କଲେ । ରାଜବୈଦ୍ୟଙ୍କ ନିର୍ଦ୍ଦେଶରେ କନକ ମଂଜରୀ ନିଜ ସ୍ୱାମୀଙ୍କୁ ପଲଙ୍କ ଉପରେ ଶୁଏଇ ଦେଲେ ଏବଂ ସେ ନିଜେ କ୍ଳାନ୍ତିଜନିତ ନିଦ୍ରାରେ ଘୁମେଇବା ଆରମ୍ଭ କଲେ ।

ଏବେ ଅନ୍ୟମାନେ ମଧ୍ୟ ସାମାନ୍ୟ ଆଶ୍ୱସ୍ତି ଅନୁଭବ କଲେ ଓ ପୋଖରୀପାଣି ଯାଇ ନିତ୍ୟକର୍ମ ସାରିବା ପାଇଁ ବାହାରିଗଲେ । ଢ଼େର ସମୟଯାଏଁ ସଦାଶିବ ଶୋଇ ରହିଲେ । କନକ ମଂଜରୀ ସେଇଠି ପଲଙ୍କ ତଳେ ଶୀତଳା ପଟି ଉପରେ ଗଡିପଡିଲେ । ସମସ୍ତେ ବିଚାରିଲେ ଆଉ ସୂତ୍ରଧରଙ୍କ ଜୀବନପ୍ରତି ଭୟନାହିଁ । ସିଏ ଏଥର କ୍ରମେ ସୁସ୍ଥ ହେଇ ଉଠିବେ । ସମସ୍ତେ କହିଲେ ଏହା ମହାଭାସ୍କରଙ୍କ ଅପାରକୃପା । ଅଲିଅଳ କଳିକାଟିଏ ତ ଅକାଳରେ ଝଡି ପଡିଛି, ଆଉ ଆଗକୁ ବିପତ୍ତି ନଆସୁ ।

ସଂଧ୍ୟାଯାଇ ରାତି ମାଡ଼ିଆସିଲା । ଖିଆପିଆ ସାରି ଅନ୍ୟମାନେ ଶୋଇବାକୁ ଗଲେ । ସଦାଶିବଙ୍କ ପାଖରେ ରହିଲେ କନକ ମଂଜରୀ ଏବଂ ତାଙ୍କ ଲେଖାଯୋଖାର ମାଉସୀ । ପାଖବଖରାରେ ରାଜବୈଦ୍ୟ, ଗଙ୍ଗା ମହାପାତ୍ର, ଗଦାଧର ମହାପାତ୍ର ଓ ଆପର୍ତ୍ତି ମହାରଣା ବିଶ୍ରାମ ନେଲେ । ମଝିମଝିରେ ରାଜବୈଦ୍ୟ ନିଜେ ସଦାଶିବଙ୍କ ନିକଟକୁ ଯାଇ ତାଙ୍କର ସ୍ୱାସ୍ଥ୍ୟ ପରଖୁ ଥିଲେ । ସବୁ ଠିକ୍‌ଠାକ୍ ଚାଲିଥିଲା । ରାତି ଶେଷ ପ୍ରହରକୁ ସଦାଶିବଙ୍କ ହଠାତ୍ ପୁଣି କାଶ ଆରମ୍ଭ ହେଲା । ସେ ତୁହାକୁ ତୁହା କାଶିବାକୁ ଲାଗିଲେ । କନକ ମଞ୍ଜରୀ ସଦାଶିବଙ୍କ ଛାତି, ପିଠି ପେଟ ଆଉଁଷି ଦେଉଥାନ୍ତି । କାଶ ପରେ ଦି'ଥର ଗଳଗଳ ହେଇ ରକ୍ତବାନ୍ତି ହେଲା । ଏଭଳି ଅବସ୍ଥା ଦେଖି ସମସ୍ତେ ଛାନିଆ ହେଇଉଠିଲେ । ରାଜବୈଦ୍ୟ କିଂକର୍ତ୍ତବ୍ୟବିମୂଢ଼ ହେଇ ଭଗବାନଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ିଲେ । ସମସ୍ତଙ୍କ ମୁହଁରେ ସତେ ଯିମିତି ହଠାତ୍ କଳାଛାଇ ଘୋଟିଗଲା । ସଦାଶିବ ଅତ୍ୟନ୍ତ ବିଷଣ୍ଣ ଦେଖାଯାଉଥାନ୍ତି । ତାଙ୍କ ଛାତି ଅସ୍ୱାଭାବିକ ଭାବେ ଉଠୁଥାଏ ପଡୁଥାଏ । ଓଟାର ଆସୁଥାଏ, କିନ୍ତୁ ଆଉ ବାନ୍ତି ହେଉନଥାଏ । ଏଥର ନିଃଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ହେଲା । ଆଖିଦୁଇଟି ଟାଣି ହେଇପଡିଲା । ସେ ଅସମ୍ଭବ ଭାବେ ଅଥୟ ହେଉଥାନ୍ତି । ଲାଗୁଥାଏ ଡଙ୍ଗାଟିଏ ଅତି ଅସହାୟ ଭାବେ ପାଣି ଭିତରେ ଧୀରେ ଧୀରେ ବୁଡିଯାଉଛି । ତାକୁ ଉଦ୍ଧାର କରିବା ପାଇଁ ଉପାୟ ନାହିଁ । ଯିମିତି ଦେଖୁଦେଖୁ ଅସ୍ତଗାମୀ ସୂର୍ଯ୍ୟ ପଶ୍ଚିମ ଦିଗନ୍ତରେ ଅସ୍ତ ଯାଆନ୍ତି, ସିମିତି ଛାତି ଉଠିବା ପଡ଼ିବା ଧୀରେ ଧୀରେ

ଧ୍ୱମେଇ ଆସିଲା । ତା'ପରେ ଶେଷ ହିକ୍କା । କୋଣାର୍କ ସୂର୍ଯ୍ୟ ମନ୍ଦିରର ମୁଖ୍ୟ ବିନ୍ଧାଣି ସୂତ୍ରଧର ସଦାଶିବ ସାମନ୍ତରାୟ ମହାପାତ୍ରଙ୍କ ଜୀବନ ଦୀପଶିଖା ଅଚାନକ ନିର୍ବାପିତ ହୋଇଗଲା । ଏତେବଡ଼ ମନ୍ଦିରର ନିର୍ମାଣ ଇତିହାସରେ ଡୋରୀ ବନ୍ଧା ହୋଇଗଲା ।

ସକାଳ ନ ପାହୁଣୁ ସଦାଶିବଙ୍କ ପରଲୋକ ସମ୍ବାଦ ବିଜୁଳି ବେଗରେ ଗାଁ ସାରା ଖେଳିଗଲା । ଧରମାର ଆତ୍ମହତ୍ୟା ପରେ ଏହାଥିଲା ଶିଳ୍ପୀକୁଳ ପାଇଁ ଅନ୍ୟ ଏକ ଅତ୍ୟନ୍ତ ମର୍ମନ୍ତୁଦ ସମ୍ବାଦ । ଘୋଡ଼ା ସବାରରେ ଯାଇ ଚର ଦିନ ସକାଳପହର ବେଳକୁ ମଣିମାଙ୍କ ପାଖରେ ସଦାଶିବଙ୍କ ମୃତ୍ୟୁ ସମ୍ବାଦ ପରିବେଷଣ କରିଦେଲା । ରାଜା ଜଗନ୍ନାଥଙ୍କ ଦର୍ଶନ ସାରି ଶ୍ରୀମନ୍ଦିରରୁ ବାହୁଡୁ ଥିଲେ । ଏ ଦାରୁଣ ସମ୍ବାଦ ତାଙ୍କୁ ଖୁବ୍ ବ୍ୟଥିତ ଓ ବିଚଳିତ  କରିଦେଲା । ସଦାଶିବଙ୍କ ଉଦ୍ଦେଶ୍ୟରେ ସଂରକ୍ଷିତ ରତ୍ନ ଶିରୋପାକୁ ସୂତ୍ରଧରଙ୍କ ଶବ ର ମୁଣ୍ଡରେ ଭୂଷିତ କରାଇ ଶବାଧାରକୁ କୋଣାର୍କ ନେଇ ସେଠି ମହୋଦଧି କୂଳରେ ଦାହ କରିବା ପାଇଁ ଚର ଦ୍ୱାରା ସମ୍ରାଟ ଆଦେଶ ପଠେଇଲେ । ଶବ ସଂସ୍କାର ବିଧାନ ପାଇଁ ଭଣ୍ଡାରରୁ ୫୦ମାଢ଼ ସ୍ୱର୍ଣ୍ଣମୁଦ୍ରା ସିଲ ହେଲା । ସୂର୍ଯ୍ୟମନ୍ଦିର ନେତରୁ ସୋରାଏ ସୂତ୍ରଧରଙ୍କ ବେକରେ ମାଳସଦୃଶ ପକେଇବା ପାଇଁ ସମ୍ରାଟ ଚାରକୁ ଆଜ୍ଞା ଦେଲେ । ଏବଂ ଶବଦାହ କରିବା ପାଇଁ ମନ୍ଦିର ରୋଷେଇରୁ ସୂର୍ଯ୍ୟ-ଅଗ୍ନି ଆଣିବା ପାଇଁ ମଧ ମହାଶ୍ରମ ଚାରକୁ ଚେତେଇ ଦେଲେ । ମହାଶ୍ରମ ଆଦେଶିଥିବା ପ୍ରକାରେ ସବୁବିଧି ପାଳିତ ହେଲା । ଏକାଦଶାହ ଦିନ ସମ୍ରାଟ ନରସିଂହ ଓ ପାଟମହାଦେବୀ କସ୍ତୁରୀକାମୋଦିନୀ କୋଣାର୍କ ବେଢ଼ାରେ ଉପସ୍ଥିତ ହେଲେ ।

ଏ ଭିତରେ ପଞ୍ଚକୋଠ ସେମାନଙ୍କ ଅନୁସନ୍ଧାନ ଶେଷ କରିସାରି ମହାଶ୍ରମଙ୍କ ପାଖରେ ବିବରଣୀ ଓ ନିଷ୍ପତ୍ତି ଭେଟ କରିସାରିଥିଲେ । ସେମାନେ ସବୁ ଘଟଣାବଳୀକୁ ପର୍ଯ୍ୟାଲୋଚନା କରି ଜାଣିପାରିଥିଲେ ଯେ ପ୍ରାୟ ଅର୍ଦ୍ଧେକରୁ ଅଧିକ କାରିଗରମାନେ ନିଜର ଶୈଳ୍ପିକ ଅସହାୟତା ମହାଶ୍ରମଙ୍କ ପାଖରେ ପ୍ରକାଶିତ ହୋଇଯିବା ଆଶଙ୍କା କରି 'ମୁଣ୍ଡକାଟ'  ସମ୍ବାଦ ମିଥ୍ୟାରେ ପରିବେଷଣ କରିଥିଲେ । ସୂତ୍ରଧର ବିଚାରିଲେ ମନ୍ଦିର ଚୂଡ଼ାରେ କଳଶ ସ୍ଥାପନା କରି ମୁଣ୍ଡିମାରିବା ପାରମ୍ପରିକ ଭାବେ ଯେହେତୁ ତାଙ୍କ ନିଜ କାମ ଏବଂ ସେ ଏହାକୁ ସୂଚାରୁ ରୂପେ ସଂପାଦନା କରିପାରିନାହାନ୍ତି ତେଣୁ ମନେମନେ ସେ ନିଜକୁ ଦୋଷୀ ସାବ୍ୟସ୍ତ କଲେ ଓ  ଏଭଳି ଭାବନା ତାଙ୍କୁ ଅତ୍ୟନ୍ତ ଦୁର୍ବଳମନା କରିଦେଲା । ମନ୍ଦିର ନିର୍ମାଣକାଳରେ ଯେଉଁ କାରିଗରମାନଙ୍କ କାମକୁ ସୂତ୍ରଧର ଶୈଳ୍ପିକ ନ୍ୟୁନତାରୁ ପସନ୍ଦ କରିପାରିନଥିଲେ ବା ଯେଉଁମାନଙ୍କ କାମକୁ ସେ ଉତ୍କୃଷ୍ଟ ବୋଲି ବିବେଚନା କରି ପ୍ରଶଂସା କରୁଥିଲେ, ଏହାକୁ ନେଇ କାରିଗରଙ୍କ ମଧ୍ୟରେ ଦୁଇଟି ଗୋଷ୍ଠୀ ତିଆରି ହୋଇଯାଇଥିଲା । ବାରଶ' ବଢ଼େଇଙ୍କ ଭିତରୁ ପ୍ରାୟ ଆଠଶ' ନ୍ୟୁନମାନର ଥିଲେ । ଏମାନେ ହିଁ ସୂତ୍ରଧରଙ୍କୁ ଓ ସମ୍ରାଟଙ୍କୁ ବେଶି ଭୟ କରୁଥିଲେ । ସେମାନଙ୍କ ଆଶଙ୍କା ଥିଲା ଯେ ଦେଉଳର ମୁଣ୍ଡି ମରାହୋଇ ନପାରିବାର ଦୋଷ ଶେଷରେ ତାଙ୍କ ମୁଣ୍ଡ ଉପରେ ଲଦା ହୋଇଯିବ । ଏଣୁ ସେମାନେ ମେଳି କରି ସୂତ୍ରଧରଙ୍କ ଉପରେ ଜାତି,

କୁଳ, ପରମ୍ପରାର ଦ୍ୱାହି ଦେଇ ତାଙ୍କୁ ମାନସିକ ସ୍ତରରେ ସ୍ଥାଣୁ କରିଦେଲେ । ଅସଲ କଥା ହେଲା ସୂତ୍ରଧର ଅସୁସ୍ଥ ଥିଲାବେଳେ ତାଙ୍କୁ ଦେଖାକରିବାକୁ ଆସିଥିବା ତାଙ୍କ ସୁଯୋଗ୍ୟ ପୁତ୍ର ଧରମା ମୁଣ୍ଡିମାରିଦେବା ପାଇଁ ନିଜେ ଆଗ୍ରହ ଦେଖାଇଥିଲା । ପିତା ସଦାଶିବ ବାତ୍ସଲ୍ୟ ସ୍ନେହରେ ଅଭିଭୂତ ହୋଇଯାଇ ପୁତ୍ରକୁ ଏ କାର୍ଯ୍ୟରେ ପ୍ରୋତ୍ସାହନ ଦେଇଥିଲେ । ଏହା ମଧ କୁଳ ପରମ୍ପରା ସିଦ୍ଧ । ଅବଲୀଳାକ୍ରମେ ପୁତ୍ର ହିଁ ପିତାର ଦାୟାଦ ରୂପେ କୌଳିକ ବୃତ୍ତି ଓ ପରମ୍ପରାକୁ ଆଚରଣ କରିଥାଏ । ସୂତ୍ରଧରଙ୍କୁ ମହାରାଜାଙ୍କ ପାଖରେ ଅଯୋଗ୍ୟ ବୋଲି ପ୍ରମାଣ କରିବା ପାଇଁ ଅସନ୍ତୁଷ୍ଟ ଗୋଷ୍ଠୀଙ୍କୁ ଏ ଘଟଣା ଗୋଟିଏ ଅପୂର୍ବ ସୁଯୋଗ ଯୋଗାଇ ଦେଲା । ସଦାଶିବ ସେମାନଙ୍କ କ୍ରୂର-ହୀନ ଚକ୍ରାନ୍ତ ଭେଦ କରିପାରିଲେ ନାହିଁ । ଜଣେ ଉଚ୍ଚଦରର ଶିଳ୍ପୀ ନିଜର ସାମାନ୍ୟତମ ଶୈଳ୍ପିକ ଅବହେଳା ସହ୍ୟ କରିପାରେନି । ସେ ଶୈଳ୍ପିକ ଶ୍ରେଷ୍ଠତ୍ୱର ଉଚ୍ଚ ଆସନରୁ ତଳକୁ ଓହ୍ଲେଇଯିବା କେବେ ବି କଳ୍ପନା କରିନଥାଏ । ସେ ନିଜସୃଷ୍ଟ କଳାକୁ ନିଜ ଜୀବନଠାରୁ ଅଧିକ ବୋଲି ବିବେଚନା କରିଥାଏ । ସେ ମଧ ଭାବୁଥାଏ, ମଣିଷ ଜୀବନ ତ ବିନଶ୍ୱର, ଜୀବନ ବଦଳରେ କାଳଜୟୀ କଳାର ସନ୍ତକଟିଏ ମଣିଷ ଯୁଗଯୁଗକୁ ଅମର କରି ରଖିଦେବ । ଏଭଳି ଭାବନା ଯେତେ ସତ ହେଉ ପଛେ ଏହା ଏକ ସୁସ୍ଥ ପାରିବାରିକ ଜୀବନ ନିର୍ବାହ କରିବାରେ ଅନ୍ତରାୟ ହୋଇଥାଏ ।

ଭୁବନେଶ୍ୱର ରାଜଗୁରୁ ସୂଚନା ଛଳରେ ସମ୍ରାଟଙ୍କୁ ଜଣାକଲେ, ମହାଭାଗଙ୍କର ସ୍ମରଣ ଥିବ ପୀଠ ଉପରେ ଯୋଦ୍ଧୃ-ଅଶ୍ୱ ସ୍ଥାପନାକୁ ନେଇ ନାରାୟଣ ମହାପାତ୍ର ଏବଂ ସୂତ୍ରଧରଙ୍କ ମଧରେ ହୋଇଥିବା ବାଦବିସମ୍ବାଦ । ନାରାୟଣ ସୂତ୍ରଧରଙ୍କୁ ପ୍ରସ୍ତାବ ଦେଇଥିଲେ ଯେ ଗୋଟିଏ ପଟେ ଚାରି ଓ ଅନ୍ୟପଟେ ତିନି ଘୋଡ଼ା ନରଖି, ଉଭୟପଟେ ସମଭାବରେ ତିନି ତିନି ଏବଂ ମଝିରେ ଗୋଟିଏ ରଖାଯାଉ । ଏହା ସୂତ୍ରଧରଙ୍କ ପରିକଳ୍ପନାର ବିରୋଧ କରୁଥିଲା । ନାରାୟଣ ମହାପାତ୍ର ଭୁଲିଯାଇଥିଲେ ଯେ କୋଣାର୍କର ସୂର୍ଯ୍ୟମନ୍ଦିର ମହାଭାସ୍କରଙ୍କ ରଥ ଏଣୁ ମଧଭାଗରେ ଅଶ୍ୱର ଅବସ୍ଥିତ ଅସଂଗତ ଓ ଅଯୌକ୍ତିକ ଥିଲା । ମତଦ୍ୱୈଧ ଏତେ ତୀବ୍ର ହେଲା ଯେ ସୂତ୍ରଧର ଚିଠିଲେଖି ଏ ଘଟଣା ଆପଣଙ୍କ ନିକଟରେ ଉପସ୍ଥାପନା କରିଥିଲେ ଓ ମହାଭାଗ ସୂତ୍ରଧରଙ୍କ ନିଷ୍ପତ୍ତିକୁ ଗ୍ରହଣ କରି ନିଜର ନିର୍ଦ୍ଦେଶନା ଦେଇଥିଲେ ।

ଭୁବନେଶ୍ୱର ରାଜଗୁରୁ ଆଉ ଗୋଟିଏ ଘଟଣା ପ୍ରତି ସମ୍ରାଟଙ୍କ ଦୃଷ୍ଟି ଆକର୍ଷଣ କଲେ । ମହାଶ୍ରମ ହୁଏତ ଭୁଲି ନଥିବେ, ମଣିମାଙ୍କ ଶ୍ୱଶୁର ବୀର ପାଣ୍ଡ୍ୟରାଜା ମଦୁରାଇରୁ ଦଶଜଣ ଶିଳ୍ପୀଙ୍କୁ କୋଣାର୍କ ମନ୍ଦିର ନିର୍ମାଣ କାମରେ ସହାୟତା କରିବାକୁ ପଠେଇଥିଲେ ଏବଂ ସେମାନଙ୍କୁ ମୂର୍ତ୍ତି ଖୋଦେଇ କାମରେ ବିନିଯୋଗ କରିବା ପାଇଁ ଆଦେଶ ହୋଇଥିଲା । ସୂତ୍ରଧର ସିନ୍ଧୁ ପେଣ୍ଟୁଲୁ ଓ ଗେଡ୍ଡୁରୁ ଶର୍ମାଙ୍କୁ ଗର୍ଭଗୃହର ଲଲାଟ ବିମ୍ବରେ ଖଞ୍ଜିବା ପାଇଁ ଗୋଟିଏ ଗଜଲକ୍ଷ୍ମୀ ବିଗ୍ରହ ଖୋଦେଇ କରିବା ପାଇଁ କହିଥିଲେ । ସେ ଦୁହେଁ ମୂର୍ତ୍ତିଟି ଖୋଦେଇ କଲେ କିନ୍ତୁ ଶୈଳୀ ଦୃଷ୍ଟିରୁ ତାହା ଅତି ନିମ୍ନ

ମାନର ହେଇ ଥିବାରୁ ମନ୍ଦିରରେ ସ୍ଥାନିତ ହେଇ ନପାରିବାର କାରଣ ଦର୍ଶାଇ ସୂତ୍ରଧର ମୂର୍ତ୍ତିଟି ଗ୍ରହଣ ନ କରି ସେହି କାରିଗରମାନଙ୍କୁ ପାଣ୍ଡ୍ୟ ରାଜ୍ୟକୁ ଫେରେଇ ଦେବା ପାଇଁ ଚାହିଁଥିଲେ ।

ଏମିତି ବହୁତ ଘଟଣା ଅଛି, ଯେଉଁଥିରେ ସୂତ୍ରଧର କୋଣାର୍କ ମନ୍ଦିରର ଶୈଳ୍ପିକ ଉତ୍କର୍ଷକୁ କୌଣସିମତେ ନ୍ୟୂନ କରିବାକୁ ଚାହୁଁ ନଥିଲେ । କୋଣାର୍କ ସୂର୍ଯ୍ୟମନ୍ଦିର ନିର୍ମାଣ ଏଭଳି ଭାବରେ ତାଙ୍କୁ ଆବିଷ୍ଟ କରି ରଖିଥିଲା ଯେ ସେ ନିଜର ସୁଖ, ସ୍ୱାଚ୍ଛନ୍ଦ୍ୟ ତଥା ଅନ୍ୟର ଆକ୍ଷେପ, ଅସୂୟା ଓ ଅନ୍ୟମାନଙ୍କ ସାଙ୍ଗରେ ଶତ୍ରୁ ହେଇଯିବାର ସମ୍ଭାବନାକୁ ତୁଚ୍ଛ କରି ଏ ଦେଶର ସମ୍ରାଟ ତଥା ଶିଳ୍ପୀକୁଳର ଟେକ ରଖିବା ପାଇଁ ବେଳେବେଳେ କଠୋର ସିଦ୍ଧାନ୍ତ ଗ୍ରହଣ କରୁଥିଲେ । ସିଏ ନା ଥିଲେ ସ୍ୱାର୍ଥାନ୍ୱେଷୀ, ଅମନୋଯୋଗୀ, ଅବ୍ୟବସ୍ଥିତ ନା କାହାର ଶତ୍ରୁ ।

ଶିଳ୍ପକର୍ମର ଗୁଣ ବା ଉତ୍କର୍ଷ ଯଦିଓ ଶିଳ୍ପର ଉନ୍ନତଶୈଳୀକୁ ବୁଝେଇବ, ତଥାପି ତାହା ଶେଷରେ ଶିଳ୍ପର ଦର୍ଶନରେ ପରିଣତ ହୋଇଯିବ । ଦର୍ଶନ ପ୍ରେମକୁ ପ୍ରଚୋଦନା ଦିଏ ଓ ପ୍ରେମ ହିଁ ଜୀବନର ବ୍ରତ ହେଇଥାଏ । ଏଣୁ ଶିଳ୍ପ ଓ ଜୀବନର ସଂପର୍କ ଅଭେଦ୍ୟ ଏବଂ ପ୍ରେମ ଏହି ସଂପର୍କର ଉପଜୀବ୍ୟ ।

ସାଧାରଣତଃ ଶିଳ୍ପୀମାନେ ବାହ୍ୟସୌନ୍ଦର୍ଯ୍ୟର ଅନୁଶୀଳନ, ଚର୍ଚ୍ଚା ଓ ରୂପାୟନରେ ସତତ ମଗ୍ନ ରହୁଥିବାରୁ ସେମାନେ ଅନ୍ତର୍ନିହିତ ଗୁଣବତ୍ତାକୁ ଆଦର କରୁଥିଲେ ବି ଶିଳ୍ପ ସାଧନାରେ ତା'ର ଅନୁରଣନରେ ସେମାନେ ଉଦାସୀନ ରହିଥାନ୍ତି । ଗୁଣବତ୍ତା ଯିମିତି ଏକ ମାନବିକ ସତ୍ତ୍ୱ, ଶିଳ୍ପରସ ଗ୍ରହଣ ସେଭଳି ଏକ ବସ୍ତୁଗତ ପର୍ଯ୍ୟାୟ । ଶିଳ୍ପ-କର୍ମର ଗୁଣ ତାର ଉନ୍ନତ ଶୈଳୀ ଓ ଗଢ଼ଣ କୌଶଳରେ ନିହିତ ଥାଏ । ଆମେ ଶିଳ୍ପଗୁଣ ଓ ମାନବିକଗୁଣକୁ ପରସ୍ପର ଠାରୁ ଭିନ୍ନ ବୋଲି ବୁଝୁଥିଲେ ମଧ ତାହା ଏକ । ସାଧାରଣରେ ଆମେ ଗୁଣ ବୋଲି ଯାହାକୁ ବୁଝୁ ତାହା ମାନବିକ ଗୁଣ ଓ ଜୀବନର ଦର୍ଶନ । ସେଥିରେ ଶିଳ୍ପଗୁଣକୁ ଅନ୍ତର୍ଭୁକ୍ତ କଲେ ସାମଗ୍ରୀକ ଅବବୋଧ ସଂପୂର୍ଣ୍ଣ ହେଇପାରିବ । ଜଣେ ଉଚ୍ଚଦରର ଶିଳ୍ପୀଙ୍କୁ ବାହ୍ୟ ଓ ଅନ୍ତରର ସୌନ୍ଦର୍ଯ୍ୟ ଏକାଭଳି ପ୍ରଭାବିତ କରେ । ଶିଳ୍ପ ଓ ମଣିଷ ଭିତରେ ତାରତମ୍ୟ ଅଛି ବୋଲି ସେ ସ୍ୱୀକାର କରନ୍ତି ନାହିଁ । ଅନ୍ୟକୁ କ୍ଷତି ପହୁଞ୍ଚେଇବାର ସାମର୍ଥ୍ୟ ବା ଆସ୍ପର୍ଦ୍ଧା  ତାଙ୍କଠାରେ ନଥାଏ । ତାଙ୍କ ପାଇଁ ସ୍ନେହ, ପ୍ରେମ ଓ ଭ୍ରାତୃତା ହିଁ ଜୀବନର ବ୍ରତ । ସୂତ୍ରଧର ସଦାଶିବ ସାମନ୍ତରାୟ ମହାପାତ୍ର ଏଭଳି ଜଣେ ଅତି ଉନ୍ନତମାନର ଶିଳ୍ପୀ ଥିଲେ ।

କୋଣାର୍କ ବେଢ଼ାରେ କାର୍ଯ୍ୟରତ ଥିବା ଅଧିକାଂଶ ଶିଳ୍ପୀ ବାହ୍ୟସୌନ୍ଦର୍ଯ୍ୟ ପ୍ରତି ହିଁ ଅଙ୍ଗୀକାରବଦ୍ଧ ଥିଲେ । ଅର୍ଥଲୋଭ ସେମାନଙ୍କ ଭିତରୁ ମାନବିକତାକୁ ଛଡେଇ ନେଇଥିଲା । କିଏ ହୁଏତ ଚକର ଖିଲାଣ ଗଢୁଥିଲା ତ ଆଉ କିଏ ହୁଏତ ଦ୍ୱାରବନ୍ଧ ଉପରେ ନାଗବନ୍ଧର ସାଣକାମ କରୁଥିଲା, ପୁଣି ଆଉ ଜଣେ କିଏ ମନ୍ଦିର ପାଠକୁ ଘସିମାଜି ଚିକ୍କଣ ହିଁ କରୁଥିଲା । କିନ୍ତୁ ସେମାନଙ୍କ ଭିତରେ ଖୁବ୍ କମ୍ ଶିଳ୍ପୀ ଥିଲେ ଯେଉଁମାନେ କୋଣାର୍କର ସୂର୍ଯ୍ୟମନ୍ଦିର ଗଢୁଥିଲେ ।

ଜଣେ ହୃଦୟବାନ୍, ସନ୍ତାନବତ୍ସଳ, ସଚ୍ଚାଶିଳ୍ପୀ କେବେ କ'ଣ ଚାହିଁବ ଗୋଟିଏ ପ୍ରତିଭାର ଏଭଳି ଅସ୍ୱାଭାବିକ ଭାବେ ବିଲୟ ଘଟୁ ? କୋଣାର୍କ ବେଢ଼ାର ଏତେବଡ଼ କାରିଗରଙ୍କ ଦଳରେ ସଦାଶିବଙ୍କ ମାନବିକତା ଓ ଶିଳ୍ପପାଟବକୁ ବୁଝିବାକୁ ବହୁତ କମ୍ ଲୋକ ଥିଲେ ।

ଏ ବିବରଣୀ ପ୍ରସ୍ତୁତ କରିବା ପାଇଁ ଆମେ ବହୁ କାରିଗରଙ୍କୁ ବ୍ୟକ୍ତିଗତ ସାକ୍ଷାତ କରି ତାଙ୍କ ମନ ବିଡ଼ିଛୁ । ସେମାନଙ୍କୁ ମହାଭାସ୍କରଙ୍କ ପୂଜିତ ବିଗ୍ରହଙ୍କ ପାଖକୁ ନେଇ ଶପଥ କରେଇଛୁ । ସମସ୍ତେ ପାଞ୍ଚଜଣ କାରିଗରଙ୍କ ଆଡ଼କୁ ଆଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ସେ ପାଞ୍ଚଜଣ ହେଲେ ମଣି ବିଷୋୟୀ, ମାଧବ ଓଝା, ଦାମ ଜେନା, ଚନ୍ଦ୍ରକାନ୍ତ ଚୂନରା ଓ ଧଳା ରମେଶ ସିଂହ । ସେମାନେ ମେଳି କରିବା, ଅନ୍ୟ କାରିଗରମାନଙ୍କୁ ସୂତ୍ରଧରଙ୍କ ବିରୁଦ୍ଧରେ ମତେଇବା କାର୍ଯ୍ୟ କରିଛନ୍ତି । ମନ୍ଦିର ପ୍ରତିଷ୍ଠାର ପୂର୍ବରାତିରେ ସେମାନେ ହିଁ କୂଳସଭାରେ ସଦାଶିବଙ୍କୁ ପ୍ରଶ୍ନବାଣରେ ଜର୍ଜରିତ କରି ବ୍ୟସ୍ତ ବିବ୍ରତ କରିଛନ୍ତି । ଏଣୁ ସେମାନେ ଦଣ୍ଡନୀୟ ।

ପଞ୍ଚକୋଠରର ବିବରଣୀ ଅନୁସାରେ ମହାଶ୍ରମ, ଅମାତ୍ୟ ଭୁବନମୋହନ ସାମନ୍ତ ଓ ରାଜପୁରୋହିତ ଭୁବନେଶ୍ୱର ରାଜଗୁରୁଙ୍କ ସହ ପରାମର୍ଶ କରି ସେହି ପାଞ୍ଚଜଣଙ୍କୁ ମୃତ୍ୟୁଦଣ୍ଡ ଦେବା ପାଇଁ ନିଷ୍ପତ୍ତି ନେଇସାରିଛନ୍ତି । ଆଜିର ଏ କୂଳ ସଭାରେ ରାଜାଦେଶ ଘୋଷଣା କରିବା ଓ ସେମାନଙ୍କୁ ବନ୍ଦୀକରି ବାରାଣସୀ କଟକ ଠାରେ ପହଞ୍ଚେଇବା ଦାୟିତ୍ୱ ସେନାଧକ୍ଷ ଅନିନ୍ଦ୍ୟ ବାହୁବଳେନ୍ଦ୍ରଙ୍କ ହାତରେ ଅର୍ପଣ କରାଗଲା ।

ମହାଶ୍ରମଙ୍କ ଅନୁମତି ନେଇ ଅମାତ୍ୟ ଭୁବନମୋହନ ସାମନ୍ତ, ସୂତ୍ରଧର ସଦାଶିବ ସାମନ୍ତରାୟ ମହାପାତ୍ର ଓ ଧରମ ସାମନ୍ତରାୟ ମହାପାତ୍ରଙ୍କ ସ୍ମୃତିରେ ଦୁଇଟି ପୁରସ୍କାର ଘୋଷଣା କଲେ । ଏହି ପୁରସ୍କାର ଦୁଇଟିର ନାମ ରହିଲା ସୂତ୍ରଧର ସଦାଶିବ ଶିଳ୍ପଗୌରବ ସମ୍ମାନ ଓ ଧରମଶିଳ୍ପରତ୍ନ ସମ୍ମାନ । ସୂତ୍ରଧର ସଦାଶିବ ଶିଳ୍ପଗୌରବ ସମ୍ମାନ ଷଷ୍ଟ୍ୟୁତ୍ତର ଜଣେ ପାରମ୍ପରିକ ଶିଳ୍ପୀଙ୍କୁ ତାଙ୍କର ଶିଳ୍ପ ପରାକାଷ୍ଠା ପାଇଁ ବର୍ଷକେ ଥରେ ତିଳ ସପ୍ତମୀ ତିଥିରେ ପ୍ରଦାନ କରାଯିବ । ଏଥିପାଇଁ ଶିଳ୍ପୀଙ୍କୁ ଗୋଟିଏ ରତ୍ନଶିରୋପା, ଏକଶତ ମାଢ଼ ସ୍ୱର୍ଣ୍ଣମୋହର, ଭରଣେ ଶସ୍ୟ ଏବଂ ସ୍ୱର୍ଣ୍ଣ ଓ ରୌପ୍ୟଜରି ଖଚିତ ପାଟ ଉତ୍ତରୀୟ ଗୋଟିଏ ଭବ୍ୟ ସମାରୋହରେ ମହାଶ୍ରମ ପ୍ରଦାନ କରିବେ । ଏବଂ ଏହା ସହିତ ଧରମଶିଳ୍ପରତ୍ନ ସମ୍ମାନ ଶିଳ୍ପୀ ପରିବାରର ଜଣେ ବାରବର୍ଷର ବାଳକ ପାଇବେ ଯିଏ ଧର୍ମ ମହାପାତ୍ରଙ୍କ ଭଳି କୌଣସି ଏକ ବିଚକ୍ଷଣ ଶିଳ୍ପଚାତୁରୀ ପ୍ରଦର୍ଶନ କରିଥିବେ ।

ଏହି ପୁରସ୍କାର ପରିଚାଳନା କରିବା ପାଇଁ କଳିଙ୍ଗ କଳା ମଣ୍ଡଳ ନାମରେ ଗୋଟିଏ ସଂସ୍ଥା ଗଢ଼ାଗଲା । ସେଥିରେ ସଭ୍ୟଭାବେ ଅମାତ୍ୟ ଭୁବନମୋହନ ସାମନ୍ତ, ଲେଖାରକ୍ଷକ ନିଧି ପଟ୍ଟନାୟକ ଓ ଭଣ୍ଡାରରକ୍ଷକ ବାନାମ୍ବର ପୁଷ୍ପାଳଙ୍କାରଙ୍କ ନିଯୁକ୍ତି ଘୋଷଣା ହେଲା । ଏ ତିନିହେଁଙ୍କ ମଧ୍ୟରୁ ଅମାତ୍ୟ ଭୁବନମୋହନ ଅଧକ୍ଷ ରହିବେ ଓ ନିଧି ପଟ୍ଟନାୟକ ସଚିବ ଭାବେ ଦାୟିତ୍ୱ ତୁଲାଇବେ ।

କଳା ମଣ୍ଡଳ ପାଇଁ ଆବଶ୍ୟକୀୟ ଅର୍ଥ ପଦ୍ମକେଶର ଭଣ୍ଡାରରେ ଗଚ୍ଛିତ ରହିବ । ପୁରସ୍କାର ପ୍ରଦାନର ସମସ୍ତ ବିଧି ରକ୍ଷାପୂର୍ବକ ନୀତିନିୟମ ପାଳନ କରି ମହାଶ୍ରମଙ୍କ ଗୋଚରାର୍ଥେ ଭୁବନମୋହନ ଶିଳ୍ପୀଙ୍କ ନାମ ସୁପାରିଶ କରିବେ । ମହାଶ୍ରମ ସେଥିରେ ନିଜ ଆଜ୍ଞାମୋହର ପ୍ରଦାନ କର୍ଲାପରେ ତାହା ଜନସାଧାରଣରେ ଘୋଷଣା କରାଯିବ ଏବଂ ମହାଭାସ୍କରଙ୍କ ଜନ୍ମତିଥି ତିଳସପ୍ତମୀ ଦିନ କୋଣାର୍କର ନାଟମଣ୍ଡପ ଠାରେ ତାହା ପ୍ରଦାନ କରାଯିବ । ଉତ୍ସବ ଶେଷରେ ମୀନନାହକଙ୍କ ତତ୍ତ୍ୱାବଧାନରେ ଗୁଣିନୃତ୍ୟ ପରିବେଷଣ କରାଯିବ ।

ମହାଶ୍ରମଙ୍କ ନିଷ୍ପତ୍ତି ଘୋଷଣା ସମବେତ ଶିଳ୍ପୀମାନଙ୍କ ମଧ୍ୟରେ ହର୍ଷର ଲହର ଖେଳେଇ ଦେଲା । ସେମାନେ ମନେମନେ ବିଚାର କଲେ ଯେ ଏହି ପୁରସ୍କାରଦ୍ୱୟ ପିତା ଓ ପୁତ୍ରଙ୍କର ଶୈଳ୍ପିକ ପରାକାଷ୍ଠାକୁ ଯୁଗଯୁଗ ଧରି ଶିଳ୍ପୀକୁଳ ତଥା ସମାଜରେ ବଂଚେଇ ରଖିବ ।

କୋଣାର୍କ ମନ୍ଦିର ପ୍ରତିଷ୍ଠାର ପର ବର୍ଷ ମାଘଶୁକ୍ଳ ସପ୍ତମୀଦିନ, କଳିଙ୍ଗ କଳାମଣ୍ଡଳ ପକ୍ଷରୁ ପୁରସ୍କାର ପ୍ରଦାନ ଉତ୍ସବର ଆୟୋଜନ କରାଗଲା । ଏହି ଉପଲକ୍ଷେ ନାଟମଣ୍ଡପକୁ ଅତି ଚମତ୍କାର ଭାବେ ମଣ୍ଡଣି କରାଗଲା । ମହାଶ୍ରମ ଓ ପାଟମହାଦେବୀଙ୍କୁ ସ୍ୱାଗତ କରିବା ପାଇଁ ପାଟଜରିର ତୋରଣମାନ ସ୍ଥାପନା କରାଗଲା । ନାଟମଣ୍ଡପର ଚାରିଦିଗେ ସ୍ୱର୍ଣ୍ଣପ୍ରଦୀପ ପ୍ରଜ୍ଜ୍ୱଳନ କରାଗଲା । ମନ୍ଦିର ପ୍ରତିଷ୍ଠାବେଳେ ଯେଉଁଭଳି ସାଜସଜ୍ଜାର ଆୟୋଜନ କରାଯାଇଥିଲା ଏଥରର ଆଡ଼ମ୍ବର ତା ପାଖାପାଖି ପହଞ୍ଚିଲା । କର୍ମକାର-ସ୍ଥପତି ଗଦେଇ ମହାପାତ୍ରଙ୍କୁ ପ୍ରଥମ ସୂତ୍ରଧର ସଦାଶିବ ଶିଳ୍ପଗୌରବ ସମ୍ମାନ ପ୍ରଦାନ କରାଗଲା । ପୁରସ୍କାର ପ୍ରଦାନକରିବା ଅବସରରେ ମହାଶ୍ରମ କୋଣାର୍କର ସୂର୍ଯ୍ୟମନ୍ଦିର ନିର୍ମାଣରେ ଗଦେଇଙ୍କ ଶୈଳ୍ପିକ ଅବଦାନର ଭୂୟସୀ ପ୍ରଶଂସା କଲେ । ସ୍ୱର୍ଗତ ସୂତ୍ରଧର ସଦାଶିବ ସାମନ୍ତରାୟଙ୍କ ସହିତ ଗଦେଇଙ୍କ ଉତ୍ତମ ସଂପର୍କର ବିବରଣ ମଧ୍ୟ ଦେଲେ । ଯେହେତୁ ଚୟନ ସମିତି ପ୍ରଥମ ବର୍ଷ କୌଣସି ପ୍ରତିଭାଧର ଯୁବଶିଳ୍ପୀ ଠାବ କରିପାରିଲେ ନାହିଁ ସେହେତୁ ଧରମ ଶିଳ୍ପରତ୍ନ ସମ୍ମାନ ସ୍ଥଗିତ ରଖାଗଲା ।

କୋଣାର୍କ ମନ୍ଦିର ପ୍ରତିଷ୍ଠା ହେବା ପର ଚଉଦବର୍ଷ ଯାଏଁ ସମ୍ରାଟ ନରସିଂହ ଦେବ ରାଜତ୍ୱ କଲେ । ପ୍ରତିବର୍ଷ ଜଣେ ଜଣେ କରି ଚଉଦଜଣ ବିଶିଷ୍ଟ ଶିଳ୍ପୀଙ୍କୁ ଏହି ପୁରସ୍କାର ପ୍ରଦାନ କରାଗଲା । ଚୟନ ସମିତି ଦ୍ୱିତୀୟ ବର୍ଷ ଏହି ପୁରସ୍କାର ପାଇଁ ବିଶିଷ୍ଟ ନୃତ୍ୟଗୁରୁ ସୋମାଇ ବୈଷ୍ଣବଙ୍କ ନାମ ସୁପାରିଶ କରିଥିଲେ । ତା'ପର ବର୍ଷ ମାନଙ୍କରେ ପରିଚ୍ଛା ବିଦ୍ୟାଧର ମହାପାତ୍ର, ମୂର୍ତ୍ତିକାର ଅଇଁଠୁ ମହାପାତ୍ର, ସାଁସ୍ୟା ରାଜୀବ ମହାରଣା, ଚୁନରା ବିନ୍ଦୁ ମହାରଣା, କମାର କଣ୍ଟୁ ପୁରିଆ ମହାପାତ୍ର, ଲେଖା ରକ୍ଷକ କିଲାବୟାଳିସ ବାଟୀର ହରିଚନ୍ଦନ ଭ୍ରମରବର, ପୀଠ କାରିଗର ବିଦ୍ୟା ମହାରଣା, ସହାୟକ ସୂତ୍ରଧର ଗଙ୍ଗା ମହାପାତ୍ର, ପଥୁରିଆ ସୁନ୍ଦର ମହାପାତ୍ର, ମହାଶ୍ରମ ନରସିଂହ ଦେବଙ୍କ ମୂର୍ତ୍ତି ପ୍ରସ୍ତୁତକାରୀ ବିଶ୍ୱନାଥ ମହାପାତ୍ର ପୁରୁଷୋତ୍ତମର ଚିତ୍ରକାର ଭୁବନୀ ବିନ୍ଧାଣୀ ଓ ଜମେଇ ନାରାୟଣ ମହାପାତ୍ର ପୁରସ୍କାର ଗ୍ରହଣ କରିଥିଲେ ।

ଧରମ ଶିଳ୍ପରତ୍ନ ସମ୍ମାନ ପାଇଁ ଚୟନ ସମିତି ଦୀର୍ଘ ଚଉଦ ବର୍ଷ ଧରି କୌଣସି ଉଲ୍ଲେଖନୀୟ ଯୁବଶିଳ୍ପୀଙ୍କ ନାମ ପାଇପାରିଲେ ନାହିଁ । ଏଇଥି ପାଇଁ ଦୁଇଟି ଗୁରୁତର କାରଣ ମୁଖ୍ୟ ପ୍ରତିବନ୍ଧକ ରହିଲା । ଲୋକମାନଙ୍କ ଧାରଣା ହେଲା ଯେ ଧରମାର ଅତୃପ୍ତ ଆତ୍ମା ପ୍ରେତ ହୋଇ କୋଣାର୍କ ବେଢ଼ାରେ ବୁଲୁଛି ଏବଂ ବାଳକ କିମ୍ବା ବାଳିକାଟିଏକୁ ଏକୁଟିଆ ଭେଟିଲେ ସେମାନଙ୍କ ଉପର ସବାର ହୋଇଯାଉଛି । ତା'ପରେ ଆରମ୍ଭ ହୋଇଯାଉଛି ଅସମ୍ଭବ କମ୍ପଜ୍ୱର, ରକ୍ତବାନ୍ତି ଏବଂ ଶେଷରେ ମୃତ୍ୟୁ । ସତରେ ହେଉ ବା ମିଛରେ ହେଉ ଆଖପାଖ ଗାଁରେ ଘଟିଥିବା ଦୁଇତିନୋଟି ପିଲାଙ୍କ ଅସ୍ୱାଭାବିକ ମୃତ୍ୟୁ ଯୋଗୁଁ ଏ ଅପବାଦ ଲୋକଙ୍କ ମନରେ ଦୃଢ଼ୀଭୂତ ହୋଇଗଲା । ଏହା ସହିତ ଆଉ ଗୋଟିଏ ଅଭାବନୀୟ ଓ ଉଦ୍‌ବେଗପୂର୍ଣ୍ଣ ଘଟଣାର ପ୍ରଭାବ ଗ୍ରାମବାସୀଙ୍କ ମଗଜକୁ ଦୋହଲାଇଦେଲା । ସଦାଶିବଙ୍କ ମୃତ୍ୟୁପରେ ତାଙ୍କ ବିଧବାପତ୍ନୀ କନକ ମଂଜରୀ ପାଗଳ ପ୍ରାୟେ ହୋଇ ନୁଖୁରା ମୁକୁଳା ବାଳରେ, ବିପର୍ଯ୍ୟସ୍ତ ବେଶରେ କୋଣାର୍କ ଆଖପାଖ ଗାଁଗଣ୍ଡାରେ ନିଜ ପୁଅ ଧରମାକୁ ଖୋଜି ଖୋଜି ବୁଲିଲେ । କିଛି ଲୋକେ ଭାବିଲେ କାଳେ ଧରମ ଶିଳ୍ପରତ୍ନ ସମ୍ମାନ ପାଇଥିବା ପିଲା ପାଗଳୀ କନକ ହାବୁଡରେ ପଡିଲେ ସେ ତାକୁ ଭୁଲେଇ ଭାଲେଇ ନିଜ ଘରକୁ ନେଇଯିବ ଆଉ ତା'ର ପୁଅ ଭଳି ପାଳିବ । ଏଭଳି ଏକ ଅଜବ ପରିସ୍ଥିତି ପାଇଁ ଗାଁ ଲୋକେ ଜମାରୁ ପ୍ରସ୍ତୁତ ନଥିଲେ । ମୋଟାମୋଟି ଭାବେ କହିବାକୁ ଗଲେ ବାଲ୍ୟମୃତ୍ୟୁ ଚିନ୍ତା କେବଳ ଗ୍ରାମବାସୀଙ୍କୁ ନୁହେଁ ଚୟନ ସମିତିର ସଭ୍ୟମାନଙ୍କୁ ମଧ୍ୟ ବିଚଳିତ କଲା । ସମ୍ରାଟ ନରସିଂହ ଦେବଙ୍କ ରାଜତ୍ୱର ଅନ୍ତଯାଏଁ ସୂତ୍ରଧର ସଦାଶିବ ଶିଳ୍ପ ଗୌରବ ସମ୍ମାନ ପ୍ରଦାନ ଉତ୍ସବମାନ ପ୍ରତିବର୍ଷ ମାଘଶୁକ୍ଳ ସପ୍ତମୀ ତିଥିରେ ଯଥାବିଧି ପାଳିତ ହେଲା । ନରସିଂହଙ୍କ ଅନ୍ତେ ତାଙ୍କ ପୁତ୍ର ଭାନୁଦେବ- ଦ୍ୱିତୀୟ ସିଂହାସନ ଆରୋହଣ କଲେ । ପୁରସ୍କାର ଚୟନ ପ୍ରକ୍ରିୟାକୁ ନେଇ ପାତର ଅନ୍ତର ହେଉଥିବା ଅଭିଯୋଗ ମହାରାଜାଙ୍କ ପାଖରେ ପହଞ୍ଚିଲା । ପୁରସ୍କାର ପାଇ ସାରିଥିବା ସ୍ୱାଁସ୍ୟା ରାଜୀବ ମହାରଣା ଓ ଚୁନରା ବିନ୍ଦୁ ମହାରଣା ବାସ୍ତବିକ ଉନ୍ନତ ଧରଣର ଶିଳ୍ପୀ ନଥିଲେ । ସ୍ୱାଁସ୍ୟା ମନ୍ଦିର ନିର୍ମାଣ ପାଇଁ ଲୋକ ଯୋଗାଡ଼ କରୁଥିଲେ ଏବଂ ଚୁନରା ବିନ୍ଦୁ ମହାରଣା ତ ମାତ୍ର ଚୁନରା ଥିଲେ । ପୁଣି ତାଙ୍କ ପୁତୁରା ଚୁନରା ଚନ୍ଦ୍ରକାନ୍ତ ଧରମାର ଆତ୍ମହତ୍ୟା ସହିତ ଜଡ଼ିତ ଥିଲେ ଏବଂ ତାଙ୍କ ପ୍ରତି ଦଣ୍ଡବିଧାନ ନହୋଇଥିବାରୁ ସେ ମୁକ୍ତ ହୋଇ ସଜ୍ଜାଲୋକ ଭଳି ବୁଲୁଥିଲେ ।

ବାସ୍ତବିକ ଏହି ଦୁଇଟି ଅଭିଯୋଗ ଗୁରୁତର ଥିଲା । ଏଣୁ ସମ୍ରାଟ ଭାନୁଦେବ ଚୟନ ସମିତିକୁ ପରିବର୍ତ୍ତନ କରି ରାଜ ପୁରୋହିତ ଭୁବନେଶ୍ୱର ରାଜଗୁରୁଙ୍କ ମାର୍ଫତରେ ଏକ ନୂତନ ସମିତି ଗଠନ କଲେ । ସେଥିରେ ଦାମୋଦର ପଟ୍ଟନାୟକ ଓ ଘନ ପଟ୍ଟନାୟକ ସଭ୍ୟ ରହିଲେ । ସେମାନେ ନିଜ ନିଜ ଭିତରେ ବିଚାର ଆଲୋଚନା କରି ମହାରାଜାଙ୍କୁ ପରାମର୍ଶ ଦେଲେ ଯେ କୋଣାର୍କର ସୂର୍ଯ୍ୟ ମନ୍ଦିର ଭଳି ଅକ୍ଷୟକୀର୍ତ୍ତି ସହିତ ଦୁଇଟି ଅତୃପ୍ତ ଆତ୍ମାର ସ୍ମୃତିକୁ ଯୋଡ଼ିବା ଫଳରେ ମହନୀୟ ଶିଳ୍ପୀ ପରମ୍ପରାର ସମ୍ମାନରେ ଆଞ୍ଚ ଆସୁଛି । ଅତଏବ ଏ ସମ୍ମାନ ପ୍ରଦାନ ବ୍ୟବସ୍ଥା ବନ୍ଦ କରାଯାଉ ।

ପଦ୍ମକେଶର ଦେଉଳ କର୍ମାଙ୍ଗୀ ତାଳପତ୍ର ପୋଥିରେ ଉଲ୍ଲେଖ ଅଛି ଯେ ପଣ୍ଡା ଓ ପୂଜକମାନେ ସମ୍ରାଟ ନରସିଂହ ଦେବଙ୍କ ଅମଳରେ ମଧ୍ୟ ପୂଜାଅର୍ଚ୍ଚନା ବିଧିରେ ଅବହେଳା କରିଥିଲେ । ବେଳେବେଳେ ମହାଭାସ୍କରଙ୍କୁ ଭୋଗ ଲଗେଇବାରେ ମଧ୍ୟ ସେମାନେ ନିୟମିତତା ରକ୍ଷା କରିନଥିଲେ । ଏଣୁ ସୂର୍ଯ୍ୟ ଦେବତା ମନ୍ଦିର ପରିତ୍ୟାଗ କଲେ । ଐତିହାସିକ ମାନେ ମତପ୍ରକାଶ କରନ୍ତି ଯେ ହୁଏତ ଅନ୍ୟ କୌଣସି ଦେବତା ବା ସଂପ୍ରଦାୟର ପ୍ରଭାବ ବା ଚାପ ଫଳରେ ସୂର୍ଯ୍ୟ ମନ୍ଦିର ଅବହେଳିତ ହେଇଗଲା । ଏଭଳି ବି ହେଇପାରେ ସୂର୍ଯ୍ୟ ମନ୍ଦିର ଜନବସତି ଠାରୁ ବହୁଦୂରରେ ଘଞ୍ଚ ଜଙ୍ଗଲ ମଧ୍ୟରେ ଅବସ୍ଥିତ ଥିଲା ଏଣୁ ପ୍ରତିଦିନ ପୂଜା ସାମଗ୍ରୀ ଓ ଭୋଗସାମଗ୍ରୀ ନେଇ ମନ୍ଦିରରେ ପହଞ୍ଚିବା କଷ୍ଟସାଧ୍ୟ ହେଉଥିଲା । ଏଣୁ ସନ୍ଦେହ ହୁଏ ଯେ ମନ୍ଦିର ପ୍ରତିଷ୍ଠାର ଅଳ୍ପ ବର୍ଷ ମଧ୍ୟରେ, କେବଳ ତିଳସପ୍ତମୀ ଦିନ ହିଁ ମନ୍ଦିର ଚଳଚଞ୍ଚଳ ରହୁଥିଲା । ସେଦିନ ରଥଯାତ୍ରା ଓ ପୁରସ୍କାର ପ୍ରଦାନ ଉତ୍ସବ ବି ପାଳିତ ହେଉଥିଲା । ଭାନୁଦେବଙ୍କ ସମୟରେ ପୁରସ୍କାର ପ୍ରଦାନ ଉତ୍ସବ ବନ୍ଦ ହେଇଗଲା ପରେ କାଳକ୍ରମେ ମାଘମେଳା ହିଁ ସୂର୍ଯ୍ୟପୂଜା ପରମ୍ପରାର ମୂକ ସାକ୍ଷୀ ହେଇ ରହିଲା ।

ମାଦଳା ପାଞ୍ଜିରେ କୋଣାର୍କ ମନ୍ଦିରକୁ କେନ୍ଦ୍ରକରି ଯେତେସବୁ ବର୍ଣ୍ଣନା ଅଛି ତାକୁ ଛେପ ବୋଲି ନା ଢୋକି ହେବ ନା ଫିଙ୍ଗିହେବ । କୋଣାର୍କ ମନ୍ଦିରକୁ ନେଇ ନାନା ପ୍ରକାର କିମ୍ବଦନ୍ତୀ, ଗପ, ଲୋକକଥା ଏବେ ବି ଲୋକମୁଖରେ ପ୍ରଚଳିତ । ସେ ଭିତରେ ଯେ ସୂତ୍ରଧର ସଦାଶିବ ଶିଳ୍ପଗୌରବ ସମ୍ମାନ ଓ ଧରମ ଶିଳ୍ପରତ୍ନ ସମ୍ମାନର କଥା ପ୍ରତିଫଳିତ ହୋଇପାରିନି ତାହା ଆଚମ୍ବିତ ଲାଗେ । 'ବାରଶ' ବଢ଼େଇରେ ଦାୟ ନା ପୁଅରେ ଦାୟ' କିମ୍ବଦନ୍ତୀର ପିଠି ପଟ ଯଦି ଧରମାର ଆତ୍ମହତ୍ୟା ପ୍ରସଙ୍ଗ ହୁଏ ତା'ହେଲେ ତା'ର ପେଟ ପଟ ହେବ ପୁରସ୍କାର ପ୍ରସଙ୍ଗ ।

ମନ୍ଦିର ନିର୍ମାଣ ଆଉ ଆମରି ସମୟ ମଧ୍ୟରେ ଶହଶହ ବର୍ଷ ବିତିଯାଇଛି । ଏହାରି ଭିତରେ ମନ୍ଦିରକୁ ନେଇ ଅନେକ ଗବେଷଣା ଓ ଚର୍ଚ୍ଚା ହୋଇଛି, ପୁଣି ଅନେକ ଗ୍ରନ୍ଥ ମଧ୍ୟ ରଚିତ ହୋଇଛି । ବିଗତ ଶତାବ୍ଦୀରେ ଓଡ଼ିଶାର ଦୁଇଜଣ କରିତ୍‌କର୍ମା ଗବେଷକ, ଅଭିଷେକ ପଟବର୍ଦ୍ଧନ ଓ ଜଗଦୀଶ୍ୱର କାନଗୋଇ କୋଣାର୍କ ଲୋକକଥା ଓ କିମ୍ବଦନ୍ତୀ ସଂପର୍କରେ ତଥ୍ୟ ସଂଗ୍ରହ ପାଇଁ କ୍ଷେତ୍ରୀୟ ଅନୁସନ୍ଧାନ କାଳରେ ଗୋପ ଅଞ୍ଚଳର ଜଣେ ନବେବର୍ଷୀୟ ବୃଦ୍ଧାଙ୍କ ଦ୍ୱାରୁ ସୂତ୍ରଧର ସଦାଶିବ ଶିଳ୍ପଗୌରବ ସମ୍ମାନ ଓ ଧରମ ଶିଳ୍ପ ରତ୍ନ ସମ୍ମାନର କଥା ଜାଣିବାକୁ ପାଇଲେ । ଏଭଳି ଏକ ଅଶ୍ରୁତ ପରମ୍ପରାର ଇତିହାସକୁ ଉନ୍ମୋଚନ କରିବା ପାଇଁ ସେମାନଙ୍କର ଆଗ୍ରହ ହେଲା । ଏ ଉଦ୍ଦେଶ୍ୟ ନେଇ ସେମାନେ କୋଣାର୍କ ଅଞ୍ଚଳରେ ପରିଭ୍ରମଣ କରୁକରୁ ମହାକାଳ ଗାୟତ୍ରୀ ମନ୍ଦିରରେ ପହଞ୍ଚିଲେ । ମନ୍ଦିରଟି ଗୋଟିଏ ନିକାଞ୍ଚନ ଜଙ୍ଗଲ ମଧ୍ୟରେ ଅବସ୍ଥିତ ଥିଲା । ଚାରିଆଡ଼କୁ ଆଖିବୁଲେଇ ଆଣିଲାପରେ ମଧ୍ୟ ନିଜର କୌତୂହଳକୁ ପ୍ରଶମିତ କରି ନପାରି ମନ୍ଦିର ଦ୍ୱାରରେ ପହଞ୍ଚି ମହାକାଳ ଗାୟତ୍ରୀଙ୍କ ଦର୍ଶନ ଉଦ୍ଦେଶ୍ୟରେ ଗର୍ଭଗୃହଆଡ଼େ ଦୃଷ୍ଟି ନିକ୍ଷେପ କଲେ । ଘିଅ ଦୀପର ଅସ୍ପଷ୍ଟ ଆଲୋକରେ ଜଣେ ମୁନି ଆଖିବୁଜି ଧ୍ୟାନରତ ଥିବା ଅବସ୍ଥାରେ ଦେଖିବାକୁ ପାଇଲେ । ସେମାନେ ମନ୍ଦିର ବାହାର ମଣ୍ଡପରେ କିଛି ସମୟ ବିଶ୍ରାମ ନେଲାପରେ, ମନ୍ଦିର ଭିତରୁ ଓଁକାର ଧ୍ୱନି ଶୁଣାଗଲା । ସେମାନେ ଠଉରେଇ ନେଲେ ଯେ ମୁନିଙ୍କର ଧ୍ୟାନ ସମାପ୍ତ ହେଲା । ମୁନି ଗର୍ଭଗୃହରୁ ପଦାକୁ ଆସିବା ପରେ ସେ ଦୁହେଁ ଲମ୍ବତମ ହୋଇ ମୁନିଙ୍କର ପାଦତଳେ ପଡିଲେ । ମୁନିଙ୍କର ସ୍ୱରୂପ ଅପୂର୍ବ ଥିଲା । ତାଙ୍କ ଜଟାଜୁଟ ମସ୍ତକରୁ ଶିଖାମାନ ପାଦଯାଏଁ ଓହଳି ରହିଥିଲା । ଶୁକ୍ଳ ଶ୍ମଶ୍ରୁ ପେଟ ଉପରକୁ ଲମ୍ବି ଆସିଥିଲା । କପାଳରେ ହରିଦ୍ରା ଓ କୁଙ୍କୁମର ପ୍ରଲେପ ଦାଉଦାଉ ହୋଇ ଦେଖାଯାଉଥିଲା । ଭସ୍ମ ବିଲୋପନ ଦେହ ଅତ୍ୟନ୍ତ ଚମତ୍କାର ମନେହେଉଥିଲା । ମନ୍ଦିରକୁ ଆଗମନ କାରଣ ମୁନି ସେମାନଙ୍କୁ ପଚ୍ଛାକରନ୍ତେ ଜଗଦୀଶ୍ୱର

କାନଗୋଇ ଓ ଅଭିଷେକ ପଟ୍ଟବର୍ଦ୍ଧନ ସୂତ୍ରଧର ସଦାଶିବ ଗୌରବ ସମ୍ମାନ ଓ ଧରମ ଶିବରତ୍ନ ସମ୍ମାନ ସଂପର୍କରେ ପ୍ରାମାଣିକ ତଥ୍ୟ ଜାଣିବା ପାଇଁ ଆଗ୍ରହ ଥିବା କଥା ଜଣାକଲେ । ସେମାନଙ୍କ କଥା ଶୁଣି ମୁନି ଦଣ୍ଡେପାଇଁ ଗମ୍ଭୀର ହୋଇ କାୟୋତ୍ସର୍ଗ ମୁଦ୍ରାରେ ଠିଆ ହୋଇରହିଲେ । ତା'ପରେ ତାଙ୍କୁ ଅନୁଧାବନ କରିବା ପାଇଁ ସେ ଦୁହିଁଙ୍କୁ କହି ଆଗେ ଆଗେ ଘଞ୍ଚ ଜଙ୍ଗଲ ଭିତରକୁ ଚାଲିଲେ । ପ୍ରାୟ ଦେଢ଼ ମାଇଲ ଜଙ୍ଗଲିଆ ରାସ୍ତାରେ ଚାଲିଲା ପରେ ଗୋଟିଏ ବାମ୍ପି ପଡିଲା । ବାମ୍ପି ମୁହଁ ଗଛ ଲତାରେ ଆବୃତ ହୋଇ ରହିଥିଲା । ବାମ୍ପି ଗହ୍ୱର ତ ଅନ୍ଧାର ଥିଲା କିନ୍ତୁ ଆଶ୍ଚର୍ଯ୍ୟ ଭାବେ କେଉଁଠୁ ସାମାନ୍ୟ ସୂର୍ଯ୍ୟରଶ୍ମି ଆସୁଥିଲା କେଜାଣି ରାସ୍ତା ଜାଣିହେଉଥିଲା । ପ୍ରାୟ ଶହେସରିକି ପାହାଚ ଓହ୍ଲେଇଲା ପରେ ପାଣିର ଉପସ୍ଥିତି ଅନୁଭବ କରିହେଲା । ସେଠି ଡାହାଣ ପଟ ଠଣାରେ ମହାକାଳଙ୍କ ବିଗ୍ରହ ବିରାଜି ଥିଲା । ମନେହେଉଥିଲା ତାହା ପୂଜିତ ବିଗ୍ରହ । ସେଠି ମୁନି ଅଟକିଲେ ଏବଂ ତା'ର ବିପରୀତ ପାର୍ଶ୍ୱରେ ପଥରକାନ୍ଥ ଦେହରେ ମୁଦ କରାହୋଇଥିବା ଗୋଟିଏ ତାମ୍ର ଅନୁଶାସନକୁ ଅଙ୍ଗୁଳି ନିର୍ଦ୍ଦେଶ କଲେ । ଜଗଦୀଶ୍ୱର ଓ ଅଭିଶେକ ନିଜ ନିଜ ଥଳୀରୁ ଟର୍ଚ୍ଚ ବାହାର କରି ଅନୁଶାସନ ଉପରେ ପକେଇଲେ ଓ ତାକୁ ପଢ଼ିବାକୁ ଚେଷ୍ଟାକଲେ । କିନ୍ତୁ ସବୁଧାଡି ସଠିକ ପଢ଼ି ହେଲାନି । ମନେହେଲା ସେମାନଙ୍କ ଯାତ୍ରା ସମ୍ପୂର୍ଣ୍ଣ ସଫଳ ହେଲାନାହିଁ । ସେମାନେ ବାମ୍ପିରୁ ମନ୍ଦିର ଫେରିଲାପରେ ତାଳପତ୍ର ଉପରେ ଉତ୍‌କୀର୍ଣ୍ଣ ଅନୁଶାସନର ଏକ ନକଲ ମୁନି ସେମାନଙ୍କୁ ପାଠ କରିବାକୁ ଦେଲେ । ତ୍ରୟୋଦଶ ଶତାବ୍ଦୀର ଅକ୍ଷରର ଶୈଳୀ ଅପେକ୍ଷା ତାଳପତ୍ରର ଅକ୍ଷର ପଢ଼ିବାରେ ସେମାନଙ୍କର ଅବ୍ୟୟ ରହିଲାନି । ସାତୋଟି ତାଳପତ୍ର ଉପରେ ପାଠ ଉଦ୍ଧାର କରାଯାଇଥିଲା । ସମ୍ରାଟ ନରସିଂହ ଦେବଙ୍କ ଆଦେଶନାମା ସହ ପୁରସ୍କାର ଚୟନ ଓ ପ୍ରଦାନର ବିଧି, ପୁରସ୍କାର ସହିତ ଧନରାଶି ଓ ଅନ୍ୟାନ୍ୟ ଉପଢ଼ୌକନର ବିବରଣ ମଧ୍ୟ ଦିଆଯାଇଥିଲା । ଏତକ ଅତି ଉପାଦେୟ ତଥ୍ୟ ସଂଗ୍ରହ କରିସାରି ଜଗଦୀଶ୍ୱର ଓ ଅଭିଷେକ ରାଜଧାନୀ ଏକାମ୍ର ନଗରୀକୁ ବାହୁଡି ଆସିଲେ ।

ଏହା ବିଗତ ଶତାବ୍ଦୀର ଅଶିଦଶକର ଘଟଣା । ସଂଯୋଗକ୍ରମେ ଉଭୟେ ରାଜ୍ୟ ସାଂସ୍କୃତିକ ଗବେଷଣା ପରିଷଦର କର୍ମକର୍ତ୍ତା ଥିଲେ । ଏହି ଆବିଷ୍କାରର ଉପଲବ୍ଧ ତଥ୍ୟକୁ ଐତିହାସିକ ଗବେଷଣାରେ ବିନିଯୋଗ କରିବା ପରିବର୍ତ୍ତେ ସେମାନେ ଅତ୍ୟନ୍ତ କୌତୁହଳ ପରବଶ ହୋଇ, ରାଜାନୁଗ୍ରହ ପାଇବାପାଇଁ ରାଜ୍ୟ ସରକାର ଏ ଉଭୟ ପୁରସ୍କାର ପୁନଃ ପ୍ରଚଳନ କରନ୍ତୁ ବୋଲି ପ୍ରସ୍ତାବ ଦେଲେ । ସବୁ ସରକାର ନିଜକୁ ସଭ୍ୟ ଓ ସଂସ୍କୃତ ଦେଖେଇହେବା ପାଇଁ ଏଭଳି ପ୍ରସ୍ତାବମାନଙ୍କ ପ୍ରତି ଆକୃଷ୍ଟ ହୋଇଥାନ୍ତି । ଏ କ୍ଷେତ୍ରରେ ଏହାହିଁ ହେଲା । କିନ୍ତୁ ଦପ୍ତରର ବିଭିନ୍ନ ସ୍ତର ଦେଇ ପ୍ରସ୍ତାବଟି ଘଷିମାଜି ହୋଇ ଶାଳଗ୍ରାମ ଭଳି ଚିକ୍କଣ ହୋଇଗଲା । ଶେଷରେ ନିଷ୍ପତ୍ତି ହେଲା ଯେ ଦୁଇଟି ପୁରସ୍କାର ବଦଳରେ ସରକାର ଗୋଟିଏ ମାତ୍ର ପୁରସ୍କାର ପ୍ରଦାନ କରିବେ ଏବଂ ଏହାର ନାମ ରହିବ ଧର୍ମପଦ ପୁରସ୍କାର ।

ପୁରସ୍କାର ସହିତ ଶିଶୁ ଶିଳ୍ପୀ ଧରମାର ନାମ ଯୋଡାହେବ ଅଥଚ ଷଷ୍ଠ୍ୟୁଉର ଜଣେ ବରିଷ୍ଠ ଶିଳ୍ପୀଙ୍କୁ ତିନିବର୍ଷରେ ଥରେ ଏହି ପୁରସ୍କାର ଦିଆଯିବ । ଉଦ୍ଦେଶ୍ୟ ରହିଲା, ପୁରସ୍କାର ମାଧ୍ୟମରେ ଉଭୟ ନବ୍ୟ ଓ ପ୍ରବୀଣଙ୍କୁ ଏକାଭଳି ଆଦର ଓ ସମ୍ମାନ ମିଳିବ । ପୁରସ୍କାରର ନାମକରଣରେ ନବୀନ ପ୍ରତିଭାର ଆଦର ଏବଂ ପୁରସ୍କାର ପ୍ରଦାନରେ ଜଣେ ବୟୋଜ୍ୟେଷ୍ଠ ଶିଳ୍ପୀଙ୍କର ସମ୍ମାନ ସରକାରଙ୍କ ଧ୍ୟେୟ ହେବ । ପୁରସ୍କାର ରାଜ୍ୟ ସାଂସ୍କୃତିକ ଗବେଷଣା ପରିଷଦ ଅଧୀନରେ ସଂଚାଳିତ କଳିଙ୍ଗ ଶିଳ୍ପୀ ମହାସଂଘ ମାର୍ଫତରେ ପ୍ରଦତ୍ତ ହେବ । ପୁରସ୍କାର ପାଇଁ ଶିଳ୍ପୀ ଚୟନ କରିବାକୁ ସରକାର ଏକ ସମିତି ଗଢ଼ିଲେ । ସେଥିରେ ସାତଜଣ ସଭ୍ୟ ରହିଲେ । ସେମାନେ ହେଲେ ଜଗଦୀଶ୍ୱର କାନଗୋଈ, ଅଭିଷେକ ପଟ୍ଟବର୍ଦ୍ଧନ, ରମାରମଣ ସାମର୍ଥ, ବୈରୀଗଞ୍ଜନ ତ୍ରିପାଠୀ, ବୀରବର ପଟ୍ଟନାୟକ, ଶୁଭେନ୍ଦୁ ମହାଳିକ ଓ ରମଳା ଝଙ୍କାର ।

ଏହି ସମିତି ଶିଳ୍ପୀ ଚୟନ ପାଇଁ କେବଳ ଦୁଇଟି ପରିମାପକ ରଖିଲେ । ଗୋଟିଏ ହେଲା ବୟସ ଓ ଅନ୍ୟଟି ହେଲା ପାରଦର୍ଶିତା । ବୟସ ମାପିବା ପାଇଁ ପ୍ରମାଣପତ୍ର ଏବଂ ଆବଶ୍ୟକ ସ୍ଥଳେ ଜାତକ ଓ ଟିପଣା ବ୍ୟବହାର କରାଯାଇପାରେ କିନ୍ତୁ ପାରଦର୍ଶିତା ନିର୍ଦ୍ଧାରଣ କରିବା ପାଇଁ କି ଉପାୟ ଅବଲମ୍ବନ କରାଯିବ ସେଥିନେଇ ସେମାନଙ୍କ ଆଭିମୁଖ୍ୟ ପରିଷ୍କାର ହେଇପାରିଲାନାହିଁ । ପରିଣତ ବୟସରେ ପ୍ରତ୍ୟେକ ଶିଳ୍ପୀଙ୍କୁ କୁହାଯାଏ ଶ୍ରେଷ୍ଠ, ପ୍ରବୀଣ, ଯୋଗ୍ୟ, ନମସ୍ୟ ଓ ବର୍ଷୀୟାନ । ପୁଣି ଶିଳ୍ପୀଜଣକ ନିଜ ଉଦରପୋଷଣ ପାଇଁ ଚାକିରୀ ଖଣ୍ଡେ କରି, ଅବଲୀଳାକ୍ରମେ ବିବାହ ଓ ପରେ ପରେ ପୁତ୍ରକନ୍ୟାଙ୍କ ଜନକ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ ମଧ୍ୟ ସାଧାରଣରେ ପୁରସ୍କାର ପାଇବା ପାଇଁ କୁହାଯାଇଥାଏ ଜୀବନବ୍ୟାପୀ ସାଧନା, ଶୈଳ୍ପିକ ଅବଦାନ, ଏ ଦେଶ ଓ ଜାତି ପାଇଁ ସଂଗ୍ରାମରେ ବ୍ରତୀ ଇତ୍ୟାଦି । ଏଣୁ ଏଭଳି ଗୁଣସମୂହକୁ ଆଧାର କରି ପ୍ରାୟ ସବୁ ବୟସ୍କ ଓଡ଼ିଆ ଶିଳ୍ପୀ ଧର୍ମପଦ ପୁରସ୍କାର ପାଇବାର ଆଶାପୋଷଣ କଲେ । ଆଶା ଧୀରେ ଧୀରେ ଦାବୀରେ ପରିଣତ ହେଲା ।

ଏଣେ ସମିତିର ସଭ୍ୟମାନେ ଅତ୍ୟନ୍ତ ହାସ୍ୟାସ୍ପଦ ପନ୍ଥାମାନ ଗ୍ରହଣ କଲେ । ସେମାନେ ନିଜ ଭିତରୁ କାହାକୁ ଧର୍ମପଦ ପୁରସ୍କାର ଦେବା ପାଇଁ ମନସ୍ଥ କଲେ ସଂପୃକ୍ତ ସଭ୍ୟଙ୍କୁ ସଭାସ୍ଥଳ ଛାଡି ପ୍ରକୋଷ୍ଠ ବାହାରକୁ ଯିବାକୁ ଅନୁରୋଧ କରି ସେହି ସଭ୍ୟଙ୍କ ଅନୁପସ୍ଥିତିରେ ତାଙ୍କୁ ପୁରସ୍କାର ଦେବାପାଇଁ ନିଷ୍ପତ୍ତି ନେଲେ । ବିରାଡି ଆଖିବୁଜି କ୍ଷୀର ପିଇଲାପରି ଏମାନେ ନିଜ ପାଖରେ ଥିବା କ୍ଷମତାକୁ ଅତି ଖାମଖିଆଲି ତଥା ହାଲୁକା ଭାବେ ବ୍ୟବହାର କଲେ । ସେମାନଙ୍କ ନିଷ୍ପତ୍ତି ନେବା ଶେଷ ହେଇଗଲାପରେ ପୁରସ୍କାରରେ ବିଭୂଷିତ କରିଥିବା ଶିଳ୍ପୀଙ୍କୁ ପ୍ରକୋଷ୍ଠ ଭିତରକୁ ଡାକିଆଣି ତାଙ୍କୁ ବାଚନିକ ସମ୍ବର୍ଦ୍ଧନା ବି ଦେଲେ । ଗୋଟିଏ ଗଣତନ୍ତ୍ର ରାଷ୍ଟ୍ରରେ ଏଭଳି ବ୍ୟବସ୍ଥା କେତେ ହାସ୍ୟାସ୍ପଦ, ତାହା ଅନୁମେୟ ।

କାଳକ୍ରମେ ସମିତିରେ ଗ୍ରହଣ କରାଯାଉଥିବା ନିଷ୍ପତ୍ତି ନୀତିଗତ ଭାବେ ଆଦର୍ଶସ୍ଥାନୀୟ ନହେବାରୁ ସମିତି ପୁଣି ଉପସମିତିମାନ ଗଠନ କରି ଚୟନ ଦାୟିତ୍ୱ ଉପସମିତି ଉପରେ ଲଦିଦେଲେ । ପୁରାଣମାନଙ୍କରେ ନିଜ ତୃତୀୟନେତ୍ରରୁ ଦେବୀ ଓ ଦେବତାମାନେ ଚଣ୍ଡି, ଚାମୁଣ୍ଡା, ଡାକିନୀ, ପିଶାଚୁଣୀ, କାଳପୁରୁଷ, ଭୂତ, ପ୍ରେତ ସୃଷ୍ଟି କଲାଭଳି କଥା ହେଲା । ଯେଉଁକାର୍ଯ୍ୟ ଦେବୀ ଓ ଦେବତାମାନେ ନିଜେ ସମ୍ଭାଳି ପାରୁନଥିଲେ ତାହା ଏବେ ଭୂତପ୍ରେତଙ୍କ ମାଧ୍ୟମରେ ସଂପନ୍ନ କରାଗଲା । ଏଭଳି ଅସଂଗତିକୁ ପ୍ରତିରୋଧ କରିବାରେ ସମର୍ଥ ହେଉଥାନ୍ତେ ସେମାନେ ନିଜେ ପୁରସ୍କାର ପାଇବାର ସମ୍ଭାବନାକୁ ବିପଦରେ ପକେଇ ଏଭଳି ଜନହିତକର କାର୍ଯ୍ୟରେ ମନଯୋଗ ଦେଲେନାହିଁ । ଦିନାକେତେ ଏଭଳି ବ୍ୟବସ୍ଥା ଚାଲିଲା । ଖୁବ୍ ସମ୍ଭବତଃ ଉପସମିତି ଓ ସମିତିର ସଭ୍ୟମାନେ ଅନୁଭବ କଲେ ଯେ ସେମାନଙ୍କ ଦ୍ୱାରା ଅବଲମ୍ବନ କରାଯାଉଥିବା ପନ୍ଥା ଏକ ବୃହତ୍ତର ପରିପ୍ରେକ୍ଷୀରେ ସ୍ୱୀକୃତ ନୁହେଁ । ଏଣୁ ଧର୍ମପଦ ପୁରସ୍କାର ଚୟନ ପଦ୍ଧତିରେ ପରିବର୍ତ୍ତନ ପାଇଁ ସରକାରଙ୍କୁ ପ୍ରସ୍ତାବ ଦିଆଗଲା । ନୂତନ ବିଧି ବ୍ୟବସ୍ଥାରେ ରହିଲା ଯେଉଁ ଶିଳ୍ପୀ, ଶିଳ୍ପୀ ମହାସଂଘର ବାର୍ଷିକ କଳା ପ୍ରଦର୍ଶନୀରେ ଥରେ ମାତ୍ର ପୁରସ୍କୃତ ହେଇଥିବେ ସିଏ ଧର୍ମପଦ ପୁରସ୍କାର ପାଇଁ ଶିଳ୍ପୀଙ୍କୁ ଚୟନ କରିବା ଅଧିକାର ପାଇବେ । ଏହା ମାଙ୍କଡ଼ ହାତରେ ଶାଳଗ୍ରାମ ନ୍ୟାୟ ହେଲା । ଏମିତି ହେଇ ଓଡ଼ିଶାଯାକରୁ ଦେଢ଼ଶହ ଦୁଇଶହ ଶିଳ୍ପୀ ଭୋଟର ତାଲିକାରେ ସ୍ଥାନିତ ହେଲେ । ଅଧିକାଂଶ ଯୁବଶିଳ୍ପୀ ବିଦ୍ୟାଧ୍ୟୟନ ବେଳେ ପୁରସ୍କାର ପାଇଥିବାରୁ ଶିଳ୍ପୀ ମହାସଂଘର ତାଲିକାରେ ସେମାନଙ୍କ ସେବେଳର ହିଁ ଠିକଣା ରହିଲା । ସେମାନେ ପରବର୍ତ୍ତୀକାଳରେ ଓଡ଼ିଶାରେ ଏବଂ ଓଡ଼ିଶା ବାହାରେ ରହି ବିଭିନ୍ନ ସରକାରୀ ଓ ବେସରକାରୀ ସଂସ୍ଥାମାନଙ୍କରେ ନିଯୁକ୍ତି ପାଇ କାର୍ଯ୍ୟରତ ଥିବା ସତ୍ତ୍ୱେ ଏବଂ ଏହା ଅଧିକାଂଶ ଶିଳ୍ପୀଙ୍କ ଜ୍ଞାତସାରରେ ଘଟୁଥିବା ସତ୍ତ୍ୱେ ଶିଳ୍ପୀ ମହାସଂଘର ତାଲିକାରେ ସଂଶୋଧନ କରାଗଲାନାହିଁ । ଫଳରେ ଭୋଟପ୍ରାପ୍ତି ଉଦ୍ଦେଶ୍ୟରେ ସେମାନଙ୍କୁ ଡାକଯୋଗେ ପଠାଯାଉଥିବା ଚିଠିଗୁଡିକ ବାଟମାରଣା ହେଇଯାଉଥିଲା ବା ଫେରନ୍ତା ଭୋଟ କାଗଜ ବା ମନୋନୟନ ପତ୍ରଗୁଡିକରେ ଅନ୍ୟାୟଭାବେ ମହାସଂଘର ମଣ୍ଡଳାଧିକାରୀ ତଥା ଅନ୍ୟ ଅଧିକାରୀମାନେ ନିଜନିଜ ପ୍ରାର୍ଥୀଙ୍କ ସପକ୍ଷରେ ଭୋଟ ଦରଜ କରି ଦେଉଥିଲେ । ଫଳରେ ମହାସଂଘ ଚକ୍ରକତା କରି ଯାହାକୁ ଇଚ୍ଛୁଥିଲା ସିଏ ହିଁ ଧର୍ମପଦ ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ହେଉଥିଲା । ପୁଣି ଦୁଇଶହ ଶିଳ୍ପୀଙ୍କ ତାଲିକାରେ ଅର୍ଦ୍ଧେରୁ ଅଧିକ ଥିଲେ ଯୁବଶିଳ୍ପୀ ବା ବାଳୁତଶିଳ୍ପୀ । ବରିଷ୍ଠ ଓ ପ୍ରତିଭାବାନ ଶିଳ୍ପୀଙ୍କ ସଂପର୍କରେ ସେମାନେ ଅଜ୍ଞ ଥିଲେ ବା ସେମାନଙ୍କ ଧାରଣା ଅଦ୍ଭୁତ ଥିଲା । ସେମାନେ ବୃଦ୍ଧ ଶିଳ୍ପୀମାନଙ୍କୁ ଅତି ହେୟ ଓ ତୁଚ୍ଛ ଭାବରେ ଦେଖୁଥିଲେ । ଏଣୁ ସ୍ୱାଭାବିକ ଭାବେ ସେମାନଙ୍କ ବିଚାର ବିଭ୍ରାଟ ଘଟୁଥିଲା ।

କିଏ କିଏ ନିର୍ଲୋଭୀ ଧର୍ମପଦ ପୁରସ୍କାର ଆଶାୟୀ ପ୍ରାର୍ଥୀ ଅର୍ଥରେ ଆଗ୍ରହ ନ ଦେଖାଇ, ଅର୍ଥ ବଦଳରେ ଅକ୍ଷୟ ଯଶ ରଖିଯିବା ପାଇଁ ନିଷ୍ପତ୍ତି ନେଉଥିଲେ, ''ଯେ କିଏ ମୋତେ ପ୍ରାପ୍ତ ହେବାକୁ ଥିବା ଧର୍ମପଦ ଧନରାଶି ନେଇଯାଉ ପଛେ ମୋତେ ଧର୍ମପଦ କରିଦେଉ।'' - ଏହା ଥିଲା ତାଙ୍କର ଚରମ ନିବେଦନ। ତାପରେ ଦେଖାଗଲା ସେଭଳି ଧର୍ମପଦଙ୍କ ପୁତ୍ର, କନ୍ୟା, ବନ୍ଧୁବିରାଦମାନେ 'ଦେଇଥିଲେ ପାଇ ପଡ଼ିଆ ଭୂଇଁରେ ଘାସ ନଟରେଇ' ନ୍ୟାୟରେ ଭୋଟକାଗଜ ଗୁଡିକୁ ଭୋଟରମାନଙ୍କ ଠାରୁ କୌଶଳରେ କରଗତ କରିଆଣି ଠପା ଠପ୍ ମଣ୍ଡଳାଧିକାରୀଙ୍କ ମୁଣିରେ ଗଳେଇ ଦେଇଗଲେ। ଫଳରେ ପରିଣାମ କିଭଳି ଭୟାନକ ହେଲା ତା'ର ଆକଳନ କାଳ ହିଁ କରିବ। ଏଠି ଦୁଇଟି ଉପଲକ୍ଷ୍ୟ ଦିଆଯାଇପାରେ। ଦୁଇଜଣ ଯଶସ୍ୱୀ ଓଡ଼ିଆ ଶିଳ୍ପୀ ବିନୋଦଭୂଷଣ ରାଉଳ ଓ ଲକ୍ଷ୍ମୀପୂଜନ ଦାସ ସମସ୍ତ ଶୈଳ୍ପିକ ଯୋଗ୍ୟତା ଓ ଯଶ ଅର୍ଜିଥିବା ସତ୍ୱେ ଧର୍ମପଦ ପୁରସ୍କାର ପାଇବାରୁ ବଞ୍ଚିତ ହେଲେ। ଲକ୍ଷ୍ମୀପୂଜନଙ୍କୁ ଧର୍ମପଦ ହେବାର ନିଶା ଏଭଳି ଘାରିଥିଲା ଯେ ସେ ରୋଗଶଯ୍ୟାରେ ପଡିରହି ମଧ୍ୟ କୋଣାର୍କ ମୁଣ୍ଡି ମରାହେଉଥିବାର ସ୍ୱପ୍ନ ଦେଖୁଥିଲେ। ଅବଶ୍ୟ ରୋଗଶଯ୍ୟାରେ ଦୀର୍ଘଦିନ ପଡି ରହିଲେ ଶିଳ୍ପୀଟିଏ ଏଭଳି ହିଁ ସ୍ୱପ୍ନ ଦେଖିଥାଏ। ବିନୋଦଭୂଷଣ କେବଳ ଜଣେ ପ୍ରତିଭାବାନ ଶିଳ୍ପୀ ନଥିଲେ ସେ ମଧ୍ୟ ଥିଲେ ପ୍ରସିଦ୍ଧ କଳା ସମାଲୋଚକ। ତାଙ୍କଠାରେ କବିତ୍ୱ ଭରି ହେଇ ରହିଥିଲା। କିଏ ଜଣେ ଆକ୍ଷେପ କରି କହିବାର ଶୁଣାଗଲା ଯେ ଧର୍ମପଦ ନିଜେ କ'ଣ କବି ଥିଲେ ଯେ ବିନୋଦଭୂଷଣଙ୍କ କଥା ବିଚାରକୁ ନିଆଯାଇଥାନ୍ତା!

ଆଗରୁ ଧର୍ମପଦ ପୁରସ୍କାର ପାଇବା ପାଇଁ ଶିଳ୍ପୀମାନେ ଆଶାୟୀ ଥିଲେ ମଧ୍ୟ ସଂଭ୍ରମ ଦୃଷ୍ଟିରୁ ମନଖୋଲି ସର୍ବସମକ୍ଷରେ ତାହା ପ୍ରକାଶ କରୁନଥିଲେ। ଅନ୍ୟଶିଳ୍ପୀମାନେ ଆକଳନ କରି ସିଦ୍ଧାନ୍ତରେ ପହଞ୍ଚୁଥିଲେ ଯେ ଅମୁକ ବୟୋଜ୍ୟେଷ୍ଠ ଶିଳ୍ପୀ କଳିଙ୍ଗ ଶିଳ୍ପୀ ମହାସଂଘର ସର୍ବୋଚ୍ଚ ସମ୍ମାନ ପାଇବା ପାଇଁ ଉପଯୁକ୍ତ ଓ ସେମାନେ ସେହି ଶିଳ୍ପୀଙ୍କ ନାମ ସୁପାରିଶ କରି ମହାସଂଘକୁ ପଠାଉଥିଲେ। ସରକାର ମହାସଂଘର କାର୍ଯ୍ୟପ୍ରଣାଳୀରେ ହସ୍ତକ୍ଷେପ କରି ଆଉ ଏକ ଅଜବ ବିଧି ଯୋଡିଦେଲେ। ସରକାର କହିଲେ ଏଥର ଧର୍ମପଦ ପୁରସ୍କାର ପାଇଁ ଆଶାୟୀ ପ୍ରାର୍ଥୀମାନେ ନିଜେ ନିଜର ବୟସ, ଯୋଗ୍ୟତା ଓ କୃତିର ଉଲ୍ଲେଖ କରି ଦରଖାସ୍ତ କରିପାରିବେ। ଲଳିତକଳା ଓ ଖେଳକୁଦ ପ୍ରତିଯୋଗିତାରେ ଏଭଳି ହେବାର ବହୁ ନଜିର ଅଛି। ଶହେ ମିଟର ଦୌଡ ବା ଚାରିଶ ମିଟର ହଡଲ୍ସ ରେସ୍ ପାଇଁ ଯେଭଳି ଖେଳାଳୀମାନେ ପ୍ରତିଯୋଗିତା କରିବା ପାଇଁ ନିଜ ନାଁ ଦିଅନ୍ତି ସେଭଳି ଶିଳ୍ପୀମାନେ ନିଜେ ପୁରସ୍କାର ପାଇବା ପାଇଁ ନିଜ କଳାକୃତି ପ୍ରବେଶିକା ଫି ସହ ପ୍ରଦର୍ଶନୀରେ ଦାଖଲ କରନ୍ତି। ଏମାନଙ୍କ ମଧ୍ୟରେ ବିଚାର ପଦ୍ଧତିରେ ମଧ୍ୟ ଭିନ୍ନତା ଅଛି। ଖେଳାଳୀ ମାନଙ୍କର କୃତିତ୍ୱର ବିଚାର ସର୍ବ ସମକ୍ଷରେ ଖୋଲାପଡିଆରେ ହେଉଥିବା ସ୍ଥଳେ, ଶିଳ୍ପକୃତିମାନଙ୍କର ବିଚାର ରୁଦ୍ଧ ବୈଠକରେ କରାଯାଏ।

ସାହିତ୍ୟ କଥା ସଂପୂର୍ଣ୍ଣ ଅଲଗା । 'ଆଘ୍ରାଣଂ ଅର୍ଦ୍ଧ ଭୋଜନଂ' ପଦ୍ଧତିରେ ବହିଗୁଡିକୁ ପାଠ ନ କରି ଥରେ ମାତ୍ର ଶୁଙ୍ଘି ଦେଲେ ଭଲମନ୍ଦ, ପୁରସ୍କାର ପାଇବା ନ ପାଇବା ଆପେ ଆପେ ଜଣାପଡିଯାଏ । ସୃଜନର ଅନ୍ୟାନ୍ୟ ବିଭବ ପାଇଁ 'ଯାହାକୁ ଯିଏ ରସିଲା' ପଦ୍ଧତି ଊଣା ଅଧିକେ ଲାଗୁ ହେଉଥିଲେ ମଧ୍ୟ, ଶିଳ୍ପକଳା କ୍ଷେତ୍ରରେ ତାହା ଅବଶ୍ୟମ୍ଭାବୀ ହେଇପଡେ । ଏସବୁ ନୂତନ ନିୟମ ଲାଗୁ ହେବା ଉତାରେ ଜଣେ ବୟୋଜ୍ୟେଷ୍ଠ ଶିଳ୍ପୀ ପରିହାସ କରି ବଡ଼ ଗୁମର କଥାଟିଏ କହିଲେ । କଳିଙ୍ଗ କଳାମଣ୍ଡଳ ଯଦି ଭବିଷ୍ୟତରେ ଧର୍ମପଦ ପୁରସ୍କାର ଚୟନର ନିରପେକ୍ଷତା ରକ୍ଷାକରିବା ପାଇଁ ରେମ୍ପ୍ ୱାକ୍ ମାଧ୍ୟମରେ ଶ୍ରେଷ୍ଠଶିଳ୍ପୀ ନିର୍ଧାର୍ଯ୍ୟ କରିବା ପାଇଁ ବ୍ୟବସ୍ଥା ରଖନ୍ତି, ତା'ହେଲେ ବି ସେ ପ୍ରତିଯୋଗିତାରେ ଅଂଶଗ୍ରହଣ କରିବା ପାଇଁ ସମ୍ମତି ଜଣେଇବେ ।

କଳିଙ୍ଗ ଶିଳ୍ପୀ ମହାସଂଘର ନବପ୍ରଣୀତ ଧାରା ଅନୁସାରେ ଧର୍ମପଦ ପୁରସ୍କାର ପାଇଁ ଭୋଟ ଗ୍ରହଣର ଅୟଂଆରମ୍ଭ କରାଗଲା, ଏବଂ ତଦନୁଯାୟୀ ତିନିଜଣ କନିଷ୍ଠ ଶିଳ୍ପୀ ପ୍ରଥମେ ଜଣେ ସତଷଠୀ ବର୍ଷର ବୃଦ୍ଧଶିଳ୍ପୀଙ୍କ ନାମ ସୁପାରିଶ କରି ପ୍ରସ୍ତାବ ଦେଲେ । ବୃଦ୍ଧ ଶିଳ୍ପୀ ସେତେବେଳକୁ ବିଦେଶରେ । ଏହି ବୃଦ୍ଧ ଶିଳ୍ପୀଙ୍କ ନାମ ହେଲା ରୂପାନନ୍ଦ ଗଂଗମ । ଖବର କାଗଜରେ ପ୍ରକାଶ ପାଇଥିବା ବିଜ୍ଞପ୍ତି ଅନୁସାରେ ଆଉ ଚାରିଜଣ ଷଷ୍ଟ୍ୟୁତର ବୃଦ୍ଧଶିଳ୍ପୀ ପୁରସ୍କାର ଲୋଭରେ ନିଜ ନିଜ ନାମରେ ଦରଖାସ୍ତମାନ ଦାୟର କରେଇଲେ । ସେମାନେ ହେଲେ ଜଗଦୀଶ୍ୱର କାନଗୋଇ, ଗୋଲକ ବିନ୍ଧାଣିରତ୍ନ, ଶ୍ରୀହର୍ଷ ମହାରଣା ଓ ଚନ୍ଦ୍ରଶେଖର ଅବଧାନ । ପାଞ୍ଚୋଟି ନାଁ ଭିତରୁ ତିନୋଟି ନାଁ ବାଛିବାକୁ ଶିଳ୍ପୀ ମହାସଂଘର ଚୟନ ସମିତି ବସିଲା । ଅବଶ୍ୟ ପାଞ୍ଚୋଟି ନାଁ କାହିଁକି ତିନୋଟି ହେବ ତା'ର କାରଣ ଦର୍ଶେଇବାକୁ ସମିତି ବାଧ୍ୟ ନଥିଲା ବା କିଏ ଜଣେ ହେଲେ ଉପସ୍ଥିତ ସଭ୍ୟ ମହାସଂଘର କର୍ମକର୍ତ୍ତାମାନଙ୍କୁ ପଚାରିଲେ ନାହିଁ । ପ୍ରବଳ ଭାବରେ ଅଙ୍କ କଷାକଷି ହେଇ ମଧ୍ୟ ପାଞ୍ଚରୁ ତିନି ସହଜରେ ଛଣା ହେଇପାରିଲାନି । ଜାଣିବ ବା କେମିତି କିଏ ବା ଧାନ କିଏ ବା ଅଗାଡି ? ବ୍ୟକ୍ତିଗତ ଭାବେ ସମସ୍ତେ ପୁରସ୍କାର ପାଇବା ପାଇଁ ଯୋଗ୍ୟ ଥିଲେ । କିନ୍ତୁ ସାମୂହିକ ଭାବେ ଆଲୋଚନା କରି ଅପେକ୍ଷାକୃତ ଅଧିକ ଯୋଗ୍ୟ ବ୍ୟକ୍ତି ବାଛିବା କଷ୍ଟକର ହେଇ ପଡୁଥିଲା । ଅବଶ୍ୟ ଜୀବନ ପଞ୍ଜିକା ଏବଂ କୃତିର ନଥିପତ୍ର ଟେବୁଲ ଉପରେ ଖେଳେଇ ଦେଲେ ରୂପାନନ୍ଦ ଗଂଗମ ସମସ୍ତଙ୍କ ଠାରୁ ଅଲଗା ବାରି ହେଇ ପଡୁଥିଲେ । କିନ୍ତୁ ଏତେ ସହଜରେ ଏ କାର୍ଯ୍ୟଟି ଘଟୁ ବୋଲି ମହାସଂଘର ମଣ୍ଡଳାଧିକାରୀ ଚାହୁଁନଥିଲେ । ଏଣୁ ଚୟନ ସମିତିର ବୈଠକ ବାରମ୍ବାର ଆହୂତ ହେଲା ଅଥଚ ପ୍ରତିଥରର ଆଲୋଚନା ଅସମ୍ପୂର୍ଣ୍ଣ ରହିଲା ।

ଶେଷରେ ଶିଳ୍ପୀ ମହାସଂଘର ସଭ୍ୟମାନେ ଚୟନ ସମସ୍ୟାଟିକୁ ସରଳ କରିବା ପାଇଁ ଜାତି, ଆଞ୍ଚଳିକତା ଓ ଶୈଳ୍ପିକ ଧାରା ଉପରେ ନିର୍ଭର କରି ଆଲୋଚନା ଆରମ୍ଭ କଲେ ।

ରାଜନୀତି କ୍ଷେତ୍ରରେ ସଚରାଚର ଏଭଳି ଘଟେ । ଏହାକୁ ରଣକୌଶଳ କୁହାଯାଏ । ପାଞ୍ଚଜଣ ପ୍ରାର୍ଥୀଙ୍କ ମଧ୍ୟରୁ ଦୁଇଜଣ ପାରମ୍ପରିକ ଶିଳ୍ପୀ ଓ ଆଉ ତିନିଜଣ ଆଧୁନିକ ଶିଳ୍ପୀ ବୋଲି କାଗଜାଦି ତନଖିରୁ ଜଣାପଡିଲା । କିନ୍ତୁ ଜାତି ଭିତ୍ତିରେ ଜଣେ ମାତ୍ର ପାରମ୍ପରିକ ଏବଂ ଆଉଜଣେ ଶୈଳୀ ଭିତ୍ତିରେ ପାରମ୍ପରିକ ବିବେଚିତ ହେଇପାରନ୍ତି ବୋଲି ଜନୈକ ସଭ୍ୟ ଆପତ୍ତି ଉଠେଇଲେ । ଅବଶ୍ୟ ତାଙ୍କ ଆପତ୍ତି ଗ୍ରହଣୀୟ ହେଲାନାହିଁ । ପରମ୍ପରା ଆଚରଣରେ ଆବହମାନ କାଳରୁ ଜାତିଗତ ପ୍ରଥାଟିଏ ଯୋଡ଼ି ହେଇ ରହିଛି । ଐତିହାସିକତା ଦୃଷ୍ଟିରୁ ଓ ନୃତତ୍ତ୍ୱର ବିଚାର କଲେ ଲାଗୁଥିଲା ପରମ୍ପରାରେ ଜାତିର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସମସ୍ୟାଟି ଗୋଲକ ବିନ୍ଧାଣିରତ୍ନଙ୍କୁ ନେଇ ଉପୁଜିଥିଲା । ସେ ବାସ୍ତବରେ ପାରମ୍ପରିକ ଶିଳ୍ପୀକୁଳରେ ଜନ୍ମଗ୍ରହଣ କରି ନଥିଲେ । ତାଙ୍କର ପିତା ଓ ପ୍ରପିତାମହ ଶିଳ୍ପୀ ନଥିଲେ । ଆଧୁନିକ ଚିତ୍ର ଅପେକ୍ଷା ପଟଚିତ୍ର ରଚନା ସହଜ ଓ ସ୍ଥାୟୀ ଆୟର ସୁଗମ ପନ୍ଥା ବୋଲି ସେ ଆଧୁନିକ କଳା ପରିହରି ପାରମ୍ପରିକକୁ ଆପଣେଇ ଥିଲେ । ତଥାପି ମହାସଂଘ ମଣ୍ଡଳାଧିକାରୀ ମତ ଦେଲେ ଯେ ବୟସର ଆଧିକ୍ୟ ଦୃଷ୍ଟିରୁ ସେ ହିଁ ପାରମ୍ପରିକ ଶିଳ୍ପୀ ତାଲିକାରେ ପ୍ରଥମ କରି ରହନ୍ତୁ । ଗୋଲକ ବିନ୍ଧାଣିଙ୍କୁ ଚୟନତ୍ରୟୀ ଭିତରେ ସାମିଲ କଲେ ସିଏ ତ ପାରମ୍ପରିକ ଶିଳ୍ପୀଙ୍କ ଭୋଟ ଗଣ୍ଡିକ ନିଶ୍ଚୟ ପାଇବେ, ତା ସହିତ କିଛି ଆଧୁନିକ ଶିଳ୍ପୀଙ୍କ ଭୋଟ ମଧ୍ୟ ତାଙ୍କ ପାଖକୁ ଆସିବ । ଏଭଳି ଚିନ୍ତା ପଛରେ ତିନୋଟି ମୁଖ୍ୟକାରଣ ଥିଲା । ପ୍ରଥମଟି ହେଲା ଓଡ଼ିଶା ବାହାରେ ଆଧୁନିକ କଳାରେ ଗୋଲକଙ୍କ ଶିକ୍ଷା ଗ୍ରହଣ । ସେ ଥିଲେ ଉଭୟଚର; ଆଧୁନିକ ଓ ପାରମ୍ପରିକ । ଦ୍ୱିତୀୟ ହେଲା ଗୋଲକଙ୍କ କନ୍ୟା ଉଦୟଗିରିକଳା ପ୍ରତିଷ୍ଠାନର ଏକଦା ଛାତ୍ରୀ ଥିବାହେତୁ ଅଧିକାଂଶ ଯୁବ ଭୋଟର ଗୋଲକଙ୍କ ପ୍ରତି ଆକୃଷ୍ଟ ହେବାର ସମ୍ଭାବନା ଏବଂ ତୃତୀୟ କାରଣଟି ହେଲା ଆଧୁନିକ ଭୋଟରମାନଙ୍କ ଦଳବଦଳର ସମ୍ଭାବନା ଅଧିକ ହେତୁ ଗଂଗମଙ୍କ ଧର୍ମପଦ ପୁରସ୍କାର ପାଇବାର ଆଶା ବିପର୍ଯ୍ୟସ୍ତ । ଯେଉଁମାନେ ଗଂଗମ ଭାଣ୍ଡିଆ ହୁଅନ୍ତୁ ବୋଲି ଭାବୁଥିଲେ ସେମାନେ ମଣ୍ଡଳାଧିକାରୀଙ୍କ ପତ୍ୟୁତ୍ପନ୍ନମତିତାକୁ ପ୍ରଶଂସା ନକରି ରହିପାରିଲେନି । ଏବେ ପାଞ୍ଚରୁ ବଳି ପଡିଥିବା ତିନିଜଣ ଆଧୁନିକ ଶିଳ୍ପୀଙ୍କ ମଧ୍ୟରୁ ଦୁଇଜଣଙ୍କୁ ବାଛିବା ପୁଣି ଅନ୍ୟ ଏକ ସମସ୍ୟା ହେଇ ଦେଖାଦେଲା ।

ଚୟନ ସମିତିର ସବୁ ସଭ୍ୟ ମଣ୍ଡଳାଧିକାରୀଙ୍କ ଆଡେ ଚାହିଁଲେ । ମଣ୍ଡଳାଧିକାରୀ ଜଣେ ଖେଳୁଆଡ଼ ମନୋବୃତ୍ତିର ଲୋକ । ତେଣୁ ସେ ଆପାତଃ ନୀରବ ରହି, ଉପଯୁକ୍ତ ସମୟକୁ ଅପେକ୍ଷା କଲେ । ଏ ତିନିଜଣଙ୍କ ମଧ୍ୟରୁ ଚନ୍ଦ୍ରଶେଖର ଅବଧାନଙ୍କ ବୟସ ଅଧିକ ଥିଲା । ସେ ଚିଲିକା କଳାବିଦ୍ୟାଳୟର ପ୍ରଥମ ବର୍ଷର ଛାତ୍ର ଥିଲେ, ଆଉ ଥିଲେ ଜଣେ ଉଦାର, କର୍ମନିଷ୍ଠ ଶିକ୍ଷକ ଓ ସରଳ ଶୈଳ୍ପିକ ବ୍ୟକ୍ତିତ୍ୱ । ଏଣୁ ତାଙ୍କ ପ୍ରାର୍ଥୀତ୍ୱକୁ ଏଡେଇଦେବା ସହଜ ନଥିଲା । ପୁଣି ସେ ଥିଲେ ଅଜାତଶତ୍ରୁ । କିନ୍ତ ଚୟନ ସମିତିର ବିଚାରଧାରାକୁ ମହାସଂଘ

ମଣ୍ଡଳାଧିକାରୀ ନିଜର କୁଟିଳ ଚିନ୍ତାରେ ପ୍ରଭାବିତ କରୁଥିଲେ । ଚନ୍ଦ୍ରଶେଖର ଅବଧାନଙ୍କ ଭୋଟରମାନଙ୍କୁ ଆକୃଷ୍ଟ କରିବାର କ୍ଷମତା ନଥିଲା । ଯେହେତୁ ସେ ସବୁବେଳେ କ୍ଷମତାର କେନ୍ଦ୍ରବିନ୍ଦୁ ଠାରୁ ଦୂରରେ ରହୁଥିଲେ । ଏଣୁ ମଣ୍ଡଳାଧିକାରୀ 'ଚୟନତ୍ରୟୀ'ରେ ତାଙ୍କୁ ସାମିଲ କରିବା ସପକ୍ଷରେ ନଥିଲେ । କାରଣ ସେ ଗଂଗମଙ୍କ ଭୋଟସ୍ଥିତିକୁ ବିପର୍ଯ୍ୟସ୍ତ କରିବାରେ ସମର୍ଥ ହୋଇନଥାନ୍ତେ ।

ଏବେ ଆଧୁନିକ ଶିଳ୍ପୀଙ୍କ ମଧ୍ୟରୁ ଦୁଇଜଣ ଯୁଦ୍ଧକ୍ଷେତ୍ରରେ ରହିଲେ । ଜଣେ ହେଲେ ରୂପାନନ୍ଦ ଗଂଗମ ଓ ଅନ୍ୟଜଣେ ଜଗଦୀଶ୍ୱର କାନଗୋଇ । ଉଭୟେ ଚିଲିକା କଳାମହାବିଦ୍ୟାଳୟର ଏକାଶ୍ରେଣୀର ଛାତ୍ର ହେଲେ ହେଁ ଜଗଦୀଶ୍ୱର ଗଂଗମଙ୍କ ଠାରୁ ଦୁଇବର୍ଷ ବୟସରେ ବଡ଼ । ବିଗତ ଶତାବ୍ଦୀରେ କଳିଙ୍ଗ ଶିଳ୍ପୀ ମହାସଂଘ ତରଫରୁ ଯେତେବେଳେ ପ୍ରଥମ ଧର୍ମପଦ ପୁରସ୍କାର ଜଣେ ପାରମ୍ପରିକ ଚିତ୍ରକରଙ୍କୁ ପ୍ରଦାନ କରାଗଲା ସେତେବେଳେ ଜଗଦୀଶ୍ୱର ମହାସଂଘର ଉପମଣ୍ଡଳାଧିକାରୀ ଥିଲେ । ସେ ସମୟକ୍ରମେ ପଦୋନ୍ନତି ପାଇ ମଣ୍ଡଳାଧିକାରୀ ହୋଇପାରିଥିଲେ । ସେ ତାଙ୍କ ଚାକିରିକାଳ ମଧ୍ୟରେ ପାରମ୍ପରିକ ଓ ଆଧୁନିକ ଶିଳ୍ପୀଙ୍କୁ ମିଶେଇ ପ୍ରାୟ ଶହେ ଜଣଙ୍କୁ ନିଜ ଦସ୍ତଖତ ଥାଇ ପ୍ରମାଣପତ୍ର ନିଜ ହାତରେ ସଭାମଞ୍ଚ ଉପରେ ମୁଖ୍ୟ ଅତିଥିଙ୍କୁ ବଢ଼େଇଦେଇ ପୁରସ୍କାର ଗ୍ରହଣର ପ୍ରକ୍ରିୟାକୁ ଆପାତତଃ ସୁଗମ ଓ ମର୍ଯ୍ୟାଦାବନ୍ତ କରିଦେଇଥିଲେ । ଏଣୁ ଧର୍ମପଦ ପୁରସ୍କାର ପାଇଁ ଦରଖାସ୍ତ କଲାବେଳେ ବିଗତ ଦିନର ଏ ସାମାନ୍ୟ ଶିଳ୍ପୀ ପ୍ରୋତ୍ସାହନ କର୍ମ ସ୍ନେହାନୁବନ୍ଧନର ଅବଲମ୍ବନ ହେବ ବୋଲି ସେ ଦୃଢ଼ନିଶ୍ଚିତ ଥିଲେ । ତାଙ୍କରି ଭାବନା ସହିତ ଐକ୍ୟତାନ ରଖି ମଣ୍ଡଳାଧିକାରୀ ଭାବୁଥିଲେ ଜଗଦୀଶ୍ୱରଙ୍କ ଏହି ଅପୂର୍ବ କ୍ଷମତା ଗଂଗମଙ୍କ ବିଜୟ ପାଇଁ ଆବଶ୍ୟକ ସଂଖ୍ୟକ ଭୋଟ ପାଇବାରେ ନିଶ୍ଚୟ ପ୍ରତିବନ୍ଧକ ହେବ । ଯଦିଓ ମହାସଂଘ ମଣ୍ଡଳାଧିକାରୀ କାନଗୋଇଙ୍କୁ ମୋଟେ ପସନ୍ଦ କରୁ ନଥିଲେ । ତଥାପି 'ଶତ୍ରୁର ଶତ୍ରୁ ମିତ୍ର ନ୍ୟାୟରେ ତାଙ୍କ ପ୍ରାର୍ଥୀତ୍ୱକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରିଥିଲେ । ଏଭଳି ସମର୍ଥନ ପଛରେ ମଣ୍ଡଳାଧିକାରୀଙ୍କ ଅନ୍ୟଏକ ଦୂରଭିସନ୍ଧି ମଧ୍ୟ ଥିଲା । ମଣ୍ଡଳାଧୀଶଭାବେ ଜଗଦୀଶ୍ୱରଙ୍କ କାର୍ଯ୍ୟକାଳ ପୂରି ଯାଇଥିଲେ ମଧ୍ୟ ସେ ସଂଘର ସମ୍ବିଧାନ ଅନୁଯାୟୀ ମଣ୍ଡଳାଧୀଶ ପଦରେ ଅଧିଷ୍ଠିତ ଥିଲେ । ଏଣୁ ମଣ୍ଡଳାଧିକାରୀ ସଂଘର ସମସ୍ତ ନିୟମକାନୁନ ସଂପର୍କରେ ସଚେତନ ଥାଇ ସୁଦ୍ଧା ଏଭଳି ଗୋଟିଏ ଅଣସମ୍ବିଧାନିକ ଘଟଣାଟିଏ ଘଟୁ ବୋଲି ସେ ଚାହୁଁଥିଲେ । 'କର୍ଣ୍ଣ ମଲେ ପାଞ୍ଚ ନତୁବା ଅର୍ଜୁନ ମଲେ ପାଞ୍ଚ' - ମଣ୍ଡଳାଧିକାରୀଙ୍କ ନୀତି ଥିଲା । ଉଦୟଗିରି ଚିତ୍ରକଳା ପ୍ରତିଷ୍ଠାନରେ ଗଂଗମ ନିର୍ଦ୍ଦେଶକ ଥିବାବେଳେ ଧୂମକେଶ ମହାପାତ୍ର ଥିଲେ ଅଧ୍ୟାପକ । ଧୂମକେଶଙ୍କ ଶିଳ୍ପୀ ଜୀବନର ବିକାଶରେ ଗଂଗମ କୁଆଡ଼େ ଅନ୍ତରାୟ ହୋଇଥିଲେ ବୋଲି ସେ ସବୁବେଳେ ଅଭିଯୋଗ କରୁଥିଲେ । ଏହାର କାରଣ ଥିଲା ଅନ୍ୟ ପ୍ରକାରର । ଧୂମକେଶ ମହାପାତ୍ର ଚିତ୍ରକଳାରେ ଉଚ୍ଚଶିକ୍ଷା ଗ୍ରହଣ

କରି ସାରି କଳିଙ୍ଗ ଦେଶକୁ ଫେରିଲେ । ସେ ମନେମନେ ବିଚାରୁଥିଲେ ଯେ ଦେଶ ତାଙ୍କୁ ସସମ୍ମାନେ ଗ୍ରହଣ କରିବ ଓ ତାଙ୍କ ଉଚ୍ଚଶିକ୍ଷାର ଉପଯୁକ୍ତ ମର୍ଯ୍ୟାଦା ଦେବ । କିନ୍ତୁ କେଜାଣି କାହିଁକି ଫଳ ଠିକ୍ ଓଲଟା ହେଇଥିଲା । ଗଂଗମ ଯେହେତୁ ପଦ ପଦବୀରେ ଅଧିଷ୍ଠିତ ଥିଲେ ଧୂମକେଶ ଗଂଗମଙ୍କୁ ଦାୟୀ କରିବା ସ୍ୱାଭାବିକ ଥିଲା । ଏଣୁ ଧର୍ମପଦ ପୁରସ୍କାର ଚୟନ ପ୍ରକ୍ରିୟାରେ ସେ ପ୍ରଥମେ ଜଗଦୀଶ୍ୱରଙ୍କ ପକ୍ଷ ନେବା ଉଚିତ ମଣିଥିଲେ । କିନ୍ତୁ ସୌଜନ୍ୟ ଦୃଷ୍ଟିରୁ ବିଧିରକ୍ଷା କରିବା ପାଇଁ ଡକ୍ଟର ଗଂଗମଙ୍କ ବଡେଇ କରିବାରେ ସେ କୁଣ୍ଠା କରୁନଥିଲେ । ସେ ଯେତେବେଳେ ନିଜ ବିବେକ ଦ୍ୱାରା ପ୍ରଚୋଦିତ ହେଉଥିଲେ ସେତେବେଳେ ତାଙ୍କ ମୁହଁରୁ ନ୍ୟାୟୋଚିତ କଥା ଆପେ ଆପେ ଉତୁରି ପଡୁଥିଲା- ସେ ଉଦ୍‌ଘୋଷଣା କରୁଥିଲେ ଯେ ଡକ୍ଟର ଗଂଗମ ହିଁ ଧର୍ମପଦ ପୁରସ୍କାର ପାଇବା ପାଇଁ ଏକମାତ୍ର ଯୋଗ୍ୟ ବ୍ୟକ୍ତି । ତାଙ୍କର ଯୋଗ୍ୟତା, ବ୍ୟକ୍ତିଗତ ଶୈକ୍ଷିକ କୃତିତ୍ୱ ଏବଂ ସାଂପ୍ରତିକ କଳାକ୍ଷେତ୍ରକୁ ତାଙ୍କର ବିଶେଷ ଅବଦାନ ଦୃଷ୍ଟିରୁ ଗଂଗମ ସମସ୍ତଙ୍କ ଠାରୁ ଅଗ୍ରଣୀ । ପୁଣି ଯେତେବେଳେ ସେ ଶିଳ୍ପୀସମାଜର ରାଜନୈତିକ ସମୀକରଣ ଓ ଓଡ଼ିଶାର କଳାଜଗତର ପଙ୍କିଳ ବାତାବରଣ ସଂସ୍ପର୍ଶରେ ଆସୁଥିଲେ ସେ ତାଙ୍କର ମତ ପରିବର୍ତ୍ତନ କରି ଭ୍ରାନ୍ତିପୂର୍ଣ୍ଣ ମତାମତ ପ୍ରଦାନ କରୁଥିଲେ । ଧୂମକେଶ ଜଣେ ସଫଳ ସଂଗଠକ ଥିବାରୁ ଧର୍ମପଦ ପ୍ରାର୍ଥୀମାନେ ତାଙ୍କ ଉପରେ ଭରସା ରଖୁଥିଲେ ।

ଚୟନ ସମିତି  ବିଭିନ୍ନ ପ୍ରାର୍ଥୀଙ୍କ ସଂପର୍କରେ ପର୍ଯ୍ୟାଲୋଚନା କଲାବେଳେ ଚିଲିକା କଳା ମହାବିଦ୍ୟାଳୟର ପୂର୍ବତନ ନିର୍ଦ୍ଦେଶକ ଦୁର୍ଗାପୁତ୍ର ଦାସବର୍ଦ୍ଧନ ସଂପୂର୍ଣ୍ଣ ନୀରବତା ଅବଲମ୍ବନ କରୁଥିଲେ । କିନ୍ତୁ ଗଂଗମଙ୍କ ସଂପର୍କରେ ଧୂମକେଶଙ୍କ ମଧୁର ବ୍ୟାଖ୍ୟାନ ଶୁଣିଲା ପରେ ସେ ପଦେ ସାରକଥା କହିଲେ । 'ଏତେ ପ୍ରାର୍ଥୀଙ୍କ କଥା ଆଲୋଚନାକୁ ନନେଇ, ଆଲୋଚନାରେ ଅଯଥା ସମୟ ଅପଚୟ ନକରି ଡକ୍ଟର ଗଂଗମଙ୍କୁ ପ୍ରାର୍ଥୀ କରିବା ଉଚିତ ହେବ । ଏ ତିନିହେଁଙ୍କ ଭିତରେ ସେ ହିଁ ଧର୍ମପଦ ପୁରସ୍କାର ପାଇବାକୁ ଅଧିକ ଯୋଗ୍ୟ ବ୍ୟକ୍ତି । ଦୁର୍ଗାପୁତ୍ରଙ୍କ ବକ୍ତବ୍ୟ ପ୍ରମାଣ ସିଦ୍ଧ ଥିଲା ଏବଂ ସେ ବୟୋଜ୍ୟେଷ୍ଠ ହେତୁ ତାଙ୍କ ମତକୁ ଅନ୍ୟମାନେ ସହସା ବିରୋଧ କରିବା ପାଇଁ ଚାହିଁଲେନାହିଁ ।

ଏଣେ ଧର୍ମପଦ ପୁରସ୍କାରର ପ୍ରଲୋଭନ ଦେଖାଇ, ବିଶ୍ୱାସ ଜନ୍ମେଇବା ପାଇଁ ଗଂଗମଙ୍କ ପାଦସ୍ପର୍ଶ କରି ପ୍ରଣାମ କରି ତେଣେ ଚରଣ ଚୁଟିଆ ନୀତି ଅବଲମ୍ବନ କରି  ଗଂଗମକୁ ନିର୍ବାଚନରେ ପରାସ୍ତ କରେଇ ଦେଇ ପୂର୍ବଶତ୍ରୁତାର ପ୍ରତିଶୋଧ ନେବା ପାଇଁ ମଣ୍ଡଳାଧିକାରୀ ଚାହୁଁଥିଲେ । ପୁଣି ମଣ୍ଡଳାଧିକାରୀଙ୍କ ଧର୍ମପତ୍ନୀ ଅଧ୍ୟାପିକା ଭାବେ ନିଯୁକ୍ତି ନ ପାଇବା ପଛରେ ଗଂଗମଙ୍କ ଭୂମିକା ଅଛି ବୋଲି ସେ ବିଶ୍ୱାସ କରୁଥିଲେ । ଗଂଗମ ନିଜ ଜୀବନର ବହୁ ଘାତ ପ୍ରତିଘାତକୁ କୌଣସିମତେ ପାରିହେଇଯିବା ମଣ୍ଡଳାଧିକାରୀଙ୍କ ପକ୍ଷେ ଅସହ୍ୟ ହେଉଥିଲା । ତାଙ୍କ ବିଚାରରେ ଗଂଗମଙ୍କ ବିରୁଦ୍ଧରେ ଧର୍ମପଦ ପୁରସ୍କାର ଥିଲା ତାଙ୍କର ଶେଷ ଅସ୍ତ୍ର । ଗଂଗମ

ଏଥରକ ଏ ପୁରସ୍କାର ଘାଟିରୁ  ପାରି ହୋଇଗଲେ ଆଉ ସେ କଳିଙ୍ଗ ଶିଳ୍ପୀ ମହାସଂଘ ରାସ୍ତା ଦେଇ ମଧ ଯିବାଆସିବା କରିବା ସମ୍ଭାବନା କମ୍ ହୋଇଯିବ । କଳିଙ୍ଗ ଶିଳ୍ପୀ ମହାସଂଘ ଓ ଗଂଗମଙ୍କ ସଂପର୍କ କେବେହେଲେ ଭଲ ନଥିଲା । ସେ ସଭାସମିତି ମାନଙ୍କରେ ଭାଷଣଛଳରେ ବ୍ରିଟିଶ ଭାସ୍କର ହେନେରୀ ମୁର୍‌ଙ୍କ ଉକ୍ତିକୁ ଉଦ୍ଧାର କରି କହୁଥିଲେ ଯେ ତାଙ୍କ ଶବାଧାରକୁ ମଧ ମହାସଂଘ ପରିସରକୁ ଶ୍ରଦ୍ଧାଞ୍ଜଳି ପାଇଁ ମଧ ନେବା ସେ ଚାହାଁନ୍ତିନି ।

ରୂପାନନ୍ଦ ଗଂଗମ ଜୀବନରେ ବନ୍ଧୁ ଶତ୍ରୁ ସୃଷ୍ଟି କରିଥିଲେ । ବଡ଼ଖେମଣ୍ଡିର ଡ୍ରଇଁମାଷ୍ଟ୍ରେ ପଦରୁ ଉନ୍ନୀତ ହୋଇ ଇନ୍ଦ୍ରପ୍ରସ୍ଥର ଜାତୀୟ କଳାମଣ୍ଡଳର ପ୍ରଥମ ଓଡ଼ିଆ ଭାବେ ସଚିବପଦ ମଣ୍ଡନ କରିବା ବହୁ ଶିଳ୍ପୀଙ୍କ କଳ୍ପନା ବାହାରେ ଥିଲା । କର୍ମମୟ ଜୀବନରେ ବହୁ ପ୍ରକାରର ଗୁରୁଦାୟିତ୍ୱ ନିର୍ବାହବେଳେ ସେ ଯେଉଁମାନଙ୍କ ସ୍ୱାର୍ଥ ପ୍ରତି ଖିଆଲ ରଖି ନଥିଲେ ସେମାନେ ପରବର୍ତ୍ତୀ ସମୟରେ ତାଙ୍କୁ ଠିକଣା ଭାବେ ପାନେ ଦେବା ପାଇଁ ମୌକା ଉଣ୍ଡୁଥିଲେ । ଏହି ଧର୍ମପଦ ଭୋଟ ରାଜନୀତି ସେମାନଙ୍କୁ ଅପୂର୍ବ ସୁଯୋଗ ପହୁଞ୍ଚାଇଦେଲା । ପୁଣି ଏମିତିରେ ଗଂଗମଙ୍କ ରୋକଠୋକ କଥା ବହୁଶିଳ୍ପୀଙ୍କର ଅପସନ୍ଦ ଥିଲା । ସେ ସଦା ହାସ୍ୟ ପରିହାସ୍ୟ ପ୍ରିୟ ଥିଲେ ଏବଂ କଥାରେ ଲଥାରେ ବେଳେବେଳେ ଅବ୍ୟୟ ନରଖି ଯାହା କହିଦେଉଥିଲେ ତାହା ତୀର ଭଳି ଅନ୍ୟମାନଙ୍କ ଦେହରେ ଭେଦି ଯାଉଥିଲା । ସେ ଅନ୍ୟର ସାମାନ୍ୟ ଦୋଷ ଦୁର୍ବଳତା ଦେଖିଲେ ସମାଲୋଚନା କରିବାକୁ ପଛଉ ନଥିଲେ । ତାଙ୍କ ସୁସ୍ଥ ସମାଲୋଚନା ମଧ ଅନ୍ୟମାନଙ୍କ ପକ୍ଷରେ ହଜମ କରିବା ସହଜ ନଥିଲା । କିନ୍ତୁ ରୂପାନନ୍ଦ ଜଣେ ସ୍ନେହଶୀଳ ଉତ୍ତମ ବିଶ୍ୱସ୍ତ ବନ୍ଧୁ ଏକଥା ତାଙ୍କ ତଥାକଥିତ ଶତ୍ରୁମାନେ ମଧ ଅସ୍ୱୀକାର କରୁ ନଥିଲେ । ତାଙ୍କର ଆଳାପ ଆଲୋଚନା ଓ କଥାବାର୍ତ୍ତା ଖୁବ୍ ଭାବଗର୍ଭକ ଓ ରସାଳ । ଏହି କ୍ଷମତା ବନ୍ଧୁତା ବାଢ଼ିବାରେ ତାଙ୍କୁ ସାହାଯ୍ୟ କରୁଥିଲା ।

ଚିଲିକା ମହାବିଦ୍ୟାଳୟରେ ଅଧ୍ୟୟନ କରୁଥିବାବେଳେ ଗଂଗମଙ୍କ ଅଧ୍ୟାପକ ତାଙ୍କୁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଉପଦେଶ ଦେଇ କହିଥିଲେ, 'ଗଂଗମ ତମେ ଜୀବନରେ ଏଭଳି କର୍ମ କରିବ ଯାହା ଫଳରେ ତମେ ଅନ୍ୟର ଅସୂୟାର ଶରବ୍ୟ ହେବ ।' ଗଂଗମଙ୍କୁ କାହିଁକି କେଜାଣି ତାଙ୍କ ଅଧ୍ୟାପକ ଅନନ୍ତ ପ୍ରସାଦଙ୍କ ସେହି କଥାପଦକ ବେଶ୍ ମନକୁ ଛୁଇଁଥିଲା । ଏବଂ ସେ ଅନ୍ୟ ଶିଳ୍ପୀଙ୍କ ଧୈର୍ଯ୍ୟଚ୍ୟୁତି ଘଟିଲା ଭଳି ବିଭିନ୍ନ ଉଲ୍ଲେଖନୀୟ ପ୍ରକଳ୍ପମାନ ଗୋଟିଏ ପରେ ଗୋଟିଏ କରି ଚାଲିଥିଲେ । ମାତ୍ର ବୟାଳିଶି ବର୍ଷ ବୟସରେ ଉଦୟଗିରି କଳା ପ୍ରତିଷ୍ଠାନର ନିର୍ଦ୍ଦେଶକ ହୋଇ ଦଶବର୍ଷରକଠିନ ପରିଶ୍ରମ, ସାଧନା ଓ ଦୂରଦୃଷ୍ଟି ଫଳରେ ପ୍ରତିଷ୍ଠାନଟିକୁ ଯେଭଳି ଜାତୀୟ ମାନ୍ୟତା ଆଣି ଦେଇଥିଲେ ତାହା ତାଙ୍କ ପ୍ରତି ଅସୂୟା ପ୍ରଣୋଦିତ କେତେକ ଶିଳ୍ପୀଙ୍କୁ ସୁହାଇ ନଥିଲା ।  ଗଂଗମ ଅନୁଷ୍ଠାନ ଛାଡ଼ିଲା ପରେ 'ପୁନଃମୂଷିକଃ ଭବ' ନ୍ୟାୟରେ ନିର୍ଦ୍ଦେଶକ ନାଗମଣି ତାଙ୍କୁ ଅଦ୍ୱାନ ଅବସ୍ଥାକୁ ନେଇ ଆସିଲେ । ଅନୁଷ୍ଠାନର ଏଭଳି ଅବନତି

ଗଂଗମଙ୍କୁ ଯନ୍ତ୍ରଣାରେ ଆଉଟୁପାଉଟୁ କରି ଦେଇଥିଲା । ଏଣୁ ବେଳେବେଳେ ଯନ୍ତ୍ରଣା ଅସହ୍ୟ ହେଲେ ସେ ପ୍ରାଣର ବ୍ୟଥାକୁ ବ୍ୟକ୍ତ କରି ଦେଉଥିଲେ ଏବଂ ତାହା କଳାଶିକ୍ଷାର କର୍ଣ୍ଣଧାରମାନଙ୍କୁ ରୁଚୁ ନଥିଲା । କଳିଙ୍ଗ ଦେଶର ଏମିତି କୌଣସି ସରକାରୀ କଳା ଅନୁଷ୍ଠାନ ନାହିଁ, ଯାହାକୁ ସେ ଦିଗ୍‌ଦର୍ଶନ ଦେଇନାହାନ୍ତି । ସବୁ ଠାରେ ସେ ତାଙ୍କ ସାମର୍ଥ୍ୟର, ଦର୍ଶନର ଓ ନେତୃତ୍ୱର ପଦଚିହ୍ନ ଛାଡ଼ି ଯାଇଛନ୍ତି । ବିଗତ ଦିନମାନଙ୍କର ଏସବୁ ଶ୍ରେୟ ପାଇଁ ଏବେ ସେ ଅସୂୟା ପ୍ରଣୋଦିତ ବନ୍ଧୁମାନଙ୍କର (ହିତଶତ୍ରୁମାନଙ୍କର) ଅବହେଳାର ପାତ୍ର । ଅଧ୍ୟାପକ ଅନନ୍ତ ପ୍ରସାଦ ହୁଏତ ଏହାହିଁ ଚାହିଁଥିଲେ ଏବଂ ଗଂଗମଙ୍କ ଭବିତବ୍ୟରେ ଏହାହିଁ ଘଟିବାର ଥିଲା ।

ମନୋନୟନ ପ୍ରକ୍ରିୟା ଶେଷ ହେଲାପରେ କଳିଙ୍ଗ ଶିଳ୍ପୀ ମହାସଂଘର ମଣ୍ଡଳାଧିକାରୀ ଖବରକାଗଜ ମାଧ୍ୟମରେ ତିନିଜଣ ପ୍ରାର୍ଥୀଙ୍କ ନାମ ପ୍ରକାଶ କରିଦେଇ, ପାଞ୍ଚଜନ୍ୟ ଶଙ୍ଖ ବଜେଇ ଦେଇ ଅର୍ଜୁନଙ୍କ ରଥର ସାରଥୀ ଶ୍ରୀକୃଷ୍ଣ ମହାଭାରତ ଯୁଦ୍ଧର ଘୋଷଣା କଲା ଭଳି ଧର୍ମପଦ ଯୁଦ୍ଧର ଘୋଷଣା କରିଦେଲେ । ଗଂଗମଙ୍କୁ ବା ଗଂଗମଙ୍କ ପକ୍ଷର ଭୋଟରମାନଙ୍କୁ ଦେଖାହେଇଗଲେ ମଣ୍ଡଳାଧିକାରୀ ସଫେଇ ଦେଇ କହୁଥିଲେ, ମୁଁ କେବଳ ରଥର ସାରଥୀ, ଯୁଦ୍ଧ କରିବାର କ୍ଷମତା ମୋର ନାହିଁ । ପୁଣି ବେଳେବେଳେ ଶିଳ୍ପୀମାନଙ୍କ ବିଶ୍ୱାସ ଜନ୍ମେଇବା ପାଇଁ କହୁଥିଲେ, 'ଗଂଗମ ମୋର ଜ୍ୟେଷ୍ଠ, ଗୁରୁ ତୁଲ୍ୟ ଏଣୁ ଏ ଯୁଦ୍ଧରେ ମୋର ଭୂମିକା ଅତ୍ୟନ୍ତ ପରିଷ୍କାର, ସଂପୂର୍ଣ୍ଣ ନିରପେକ୍ଷ । ଖବର କାଗଜରେ ପ୍ରାର୍ଥୀମାନଙ୍କ ନାମ ଘୋଷଣା ପରେ ତିନିଜଣ, ପରସ୍ପରର ଅତି ଘନିଷ୍ଠ ବନ୍ଧୁ ଏବେ ତିନୋଟି ଦଳରେ ବିଭକ୍ତ ହେଇଗଲେ ଏବଂ ସମର୍ଥକ ଯୋଗାଡ଼ରେ ଲାଗିପଡିଲେ । ରାଜନୀତିର ବିଚିତ୍ର ଗତି !

ସାରଥୀ ଭୂମିକା ନିର୍ବାହ କରୁଥିବା ମଣ୍ଡଳାଧିକାରୀ ନିଜେ ଜଣେ ଭୋଟର ହେଇଥିଲେ ମଧ୍ୟ ଅନ୍ୟାୟଭାବେ ନିର୍ବାଚନ ପରିଚାଳନା ଦାୟିତ୍ୱରେ ରହିଲେ । ଏଣୁ ପ୍ରଥମରୁ ମନୋନୟନ ପତ୍ର ଯାଞ୍ଚବେଳେ ହିଁ ସେ ଚଞ୍ଚକତା କରିବା ଆରମ୍ଭ କରିଦେଲେ । ତା'ପରେ ପ୍ରାର୍ଥୀଚୟନ ଏବଂ ପ୍ରତିପ୍ରାର୍ଥୀଙ୍କ ପରିଚୟପତ୍ର ମୁଦ୍ରିତ ହେଇ ଆସିଲା । ଭୋଟରମାନେ ଭୋଟ ଦରଜ କଲାପରେ ବେଲେଟ୍ ପତ୍ର ତଳେ ଦସ୍ତଖତ କରିବାକୁ ମଣ୍ଡଳାଧିକାରୀଙ୍କ ହିଁ ନିର୍ଦ୍ଦେଶ ଥିଲା । ଏହାର ଅବୈଧତା ସଂପର୍କରେ ଖବରକାଗଜରେ ଅଭିଯୋଗମାନ ପ୍ରକାଶ ପାଇଲା । ବାରାଣାସୀ କଟକର ବିଖ୍ୟାତ ଶିଳ୍ପୀ ମହେନ୍ଦ୍ର ମେଘବାହନ ମହାସଂଘର ଏ ପରମ୍ପରାକୁ ବିରୋଧ କଲେ । ଏହି ସମ୍ବାଦ ଶିଳ୍ପୀମାନଙ୍କ ମନରେ ସାମାନ୍ୟ ସାମୟିକ ଉତ୍ତେଜନା ଆଣିବା ବ୍ୟତୀତ ଅନ୍ୟ କୌଣସି ପ୍ରତିକ୍ରିୟା ପ୍ରକାଶ କଲାନାହିଁ । ଶିଳ୍ପୀମାନେ ବଡ଼ ଉଦାସୀନ, କାଦୁଅକୁ ଯାଇ ଗୋଡ ଧୋଇବାରେ ବିଶ୍ୱାସ କରନ୍ତିନାହିଁ ।

ଏଭଳି ଦୋଷଯୁକ୍ତ ପଦକ୍ଷେପ ନେବାରେ ମଣ୍ଡଳାଧିକାରୀଙ୍କ ଦୁଇଟି ମୂଳ ଉଦ୍ଦେଶ୍ୟ ରହିଥିଲା । ଗୋଟିଏ ଉଦ୍ଦେଶ୍ୟ ହେଲା ଯେ ବେଲେଟ୍ କାଗଜ ତାଙ୍କ ନିକଟକୁ ଫେରିବା

ପରେ ବେଲେଟ୍ ଉପରେ ଦିଆଯାଇଥିବା ଦସ୍ତଖତଗୁଡ଼ିକର ଅନୁଶୀଳନ କରି କିଏ କେଉଁ ଦଳର ତାହା ଜାଣିପାରିବେ ଏବଂ ଭବିଷ୍ୟତରେ ନିଜେ ଯେତେବେଳେ ଧର୍ମପଦ ପୁରସ୍କାର ପାଇଁ ପ୍ରାର୍ଥୀ ହେବେ ସେତେବେଳେ ବର୍ତ୍ତମାନର ଆହରିତଜ୍ଞାନ କାର୍ଯ୍ୟରେ ଲାଗିପାରିବ। ଦ୍ୱିତୀୟତଃ ଯେନତେନ ପ୍ରକାରେଣ ଅନ୍ତତଃ ଆଉ ତିନିଚାରିବର୍ଷ ମଣ୍ଡଳାଧିକାରୀ ପଦବୀରେ ତିଷ୍ଠି ଯିବାର ସମ୍ଭାବନା ଥିବାରୁ ଯେଉଁ ଶିଳ୍ପୀମାନେ ତାଙ୍କର ମର୍ଜି ଅନୁସାରେ ଭୋଟ ଦେଇନାହାନ୍ତି ସେମାନଙ୍କୁ ମହାସଂଘର ଅନ୍ୟ ପୁରସ୍କାର ଓ ସୁବିଧା ସୁଯୋଗରୁ ବଂଚିତ କରିବା ପାଇଁ ଆପ୍ରାଣ ଚେଷ୍ଟା କରିବେ। ତାଙ୍କର ଏଭଳି କ୍ଷମତା ସଂପର୍କରେ ଅନେକ ଶିଳ୍ପୀ ସଚେତନ ଥିଲେ।

ବାହାରକୁ ସାରଥୀର ନିରପେକ୍ଷ ଭୂମିକା ନିର୍ବାହ କରୁଥିଲେ ମଧ୍ୟ ମଣ୍ଡଳାଧିକାରୀ ଭିତରେ ଭିତରେ ଗୋଲକ ବିନ୍ଧାଣି ରତ୍ନଙ୍କ ଦଳରେ ସାମିଲ ହେଇସାରିଥିଲେ। ଏବଂ ଗୋଲକଙ୍କ ପାଇଁ ସତୁରି ଅଶି ଖଣ୍ଡି ଭୋଟ ସଂଗ୍ରହର ପ୍ରତିଶ୍ରୁତି ଦେଇଥିଲେ। ଚୁଳେଶ୍ୱର ଓ ଭୋଗେଶ୍ୱର ଦଣ୍ଡପାଟର ଶିଳ୍ପୀମାନଙ୍କ ଉପରେ ତାଙ୍କର ଅସୀମ ଭରସା ଥିଲା। ଗଂଗମ ଚୁଳେଶ୍ୱରରେ ବିବାହ କରିଥିବାରୁ ସେଠାକାର ଶିଳ୍ପୀମାନଙ୍କୁ ଶାଳକ ବୋଲି ପରିହାସରେ ସମ୍ବୋଧନ କରୁଥିଲେ। ଏହାର ଗୋଟିଏ ଐତିହାସିକ କାରଣ ଥିଲା। ଗଂଗମଙ୍କ ବିଜୟନଗର ଗଡ଼ର ରାଜା ନିଜେ ଶଳା ହେଇଯିବା ଭୟରେ ନିଜ ଭଉଣୀଙ୍କୁ ମଧ୍ୟ ବିବାହ ନକରେଇ ପାଇଲ୍ଲା କରିଦେଇଥିଲେ। ଏଭଳି ଆଶଙ୍କା ପଛରେ ଶଳାମାନଙ୍କର ଆତ୍ମଘାତୀ କାର୍ଯ୍ୟ ପ୍ରଧାନ ଥିଲା। ମଣ୍ଡଳାଧିକାରୀ ଭାବୁଥିଲେ ତାଙ୍କ ଏକଦା ଛାତ୍ରୀ ଗୋଲକଙ୍କ କନ୍ୟା ଜରିଆରେ ସିଏ ପନ୍ଦର କୋଡ଼ିଏ ଆଧୁନିକ ଶିଳ୍ପୀଙ୍କ ଭୋଟ ଯୋଗାଡ଼ କରିପାରିବେ। ଏଣେ ତ ପ୍ରାୟ ପଞ୍ଚତିରିଶିଗୋଟି ପାରମ୍ପରିକ ଭୋଟ ଗୋଲକଙ୍କ ଥୁଆ। ପୁଣି ଶୁଣାଗଲା ତାଙ୍କ ପ୍ରରୋଚନାରେ ପାରମ୍ପରିକ ଭୋଟର ଶିଳ୍ପୀମାନଙ୍କର ଏକ ନିର୍ବାଚନୀ ସଭାର ଆୟୋଜନ କରାଗଲା। ସଭାସାଙ୍ଗରେ ଭୋଜିର ମଧ୍ୟ ବ୍ୟବସ୍ଥା ଥିଲା। ଭୋଜିରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମହାପ୍ରସାଦ ପରଶା ଯାଇ ପ୍ରତିଜ୍ଞା କରେଇ ଦିଆଗଲା। ସମସ୍ତେ ହାତରେ ମହାପ୍ରସାଦ ଧରି ଏକ ସ୍ୱରରେ କହିଲେ, 'ଆମେ ବାରଣ' ବଢ଼େଇରେ ଦାୟ ପୁଅରେ ନୁହେଁ'। ଏହି ସଭାରେ କୌଳିକ ପରମ୍ପରାର, ଗୁରୁଶିଷ୍ୟଙ୍କ ମଧ୍ୟରେ ଥିବା ବିମଳ ସଂପର୍କର ଅନୁରଣନ କରାଗଲା। ମନେହେଲା ଆଠଶହ ବର୍ଷ ତଳେ, ମହାରାଜ ନରସିଂହ ଦେବଙ୍କ ଅମଳରେ ଶିଳ୍ପୀଙ୍କ କୁଳସଭାରେ ଯେଉଁ ମାନସିକତା ଦେଖା ଯାଇଥିଲା ଏବେ ତା'ର ପୁନରାବୃତ୍ତି ହେଲା। ସେତେବେଳେ ଧର୍ମପଦଙ୍କୁ ଜିଅନ୍ତା ଦେଉଳ ଉପରୁ ଠେଲି ଦେଇ ହତ୍ୟା କରାଯାଇଥିଲା ଏବେ କିନ୍ତୁ ଧର୍ମପଦ ପୁରସ୍କାରର ଯୋଗ୍ୟଶିଳ୍ପୀ ଜଣକୁ ଅପଦସ୍ତ କରିବା ପାଇଁ ସଂକଳ୍ପ ନିଆଗଲା।

ଗୋଲକ ତାଙ୍କ ନିର୍ବାଚନ ପ୍ରଚାର କାର୍ଯ୍ୟ ନିଗମ କର୍ମବୀରଙ୍କ ଉପରେ ନ୍ୟସ୍ତ କଲେ। କର୍ମବୀର ଉଦୟଗିରି କଳା ପ୍ରତିଷ୍ଠାନରେ ଗଂଗମଙ୍କ ଏକଦା ଛାତ୍ର ଥିଲେ ମଧ୍ୟ ଗୁରୁଦ୍ରୋହ

କରିବା ପାଇଁ କୁଣ୍ଠାକଲେ ନାହିଁ । ନିଗମ କର୍ମବୀର ଭୋଟରଙ୍କ ହୃଦୟ ଜିଣିବା ପାଇଁ ଚର୍ବିତଚର୍ବଣ ଭାଷଣଟିଏ କଣ୍ଠସ୍ଥ କରି ଦେଇଥିଲେ । ତାଙ୍କ ଭାଷଣର ସାରାଂଶ ଏଠି ଦିଆଗଲା । 'ମନେରଖନ୍ତୁ ଧର୍ମପଦ ଭୋଟର ଭାଇଭଉଣୀମାନେ ! ଗଂଗମ ସାର୍ ଧର୍ମପଦ ପୁରସ୍କାର ପାଇବା ପାଇଁ ନିଶ୍ଚିତ ଭାବେ ଜଣେ ଯୋଗ୍ୟଶିକ୍ଷୀ, ସେ ଏବର୍ଷ ହେଉ ବା ଆସନ୍ତା ବର୍ଷ ହେଉ ଧର୍ମପଦ ପୁରସ୍କାର ପାଇବେ ହିଁ ପାଇବେ, କିନ୍ତୁ ଗୋଲକ ସାର୍ ସତସ୍ତରି ବର୍ଷରେ ପହଞ୍ଚିଲେଣି । କଳିଷଠା ଷାଠିଏ । ଏଣୁ ଆପଣମାନେ ଏଥରକ ଗୋଲକ ସାର୍‌କୁ ଆପଣଙ୍କ ଭୋଟଟି ଦିଅନ୍ତୁ । ଅଶେଷ ଧର୍ମ ଅର୍ଜନ କରିବେ । ଗୋଲକ୍ ସାର୍ ହିଁ ଧର୍ମପଦର ଉପଯୁକ୍ତ ବଂଶଧର । ଗଂଗମ ସାର୍ ଧର୍ମପଦ ପୁରସ୍କାର ଠାରୁ ବହୁ ଉଚ୍ଚରେ ।'

ଗୋଲକ ବିଦ୍ଧାଣିରତ୍ନଙ୍କ ପ୍ରଚାରକ କର୍ମବୀର ବେଳେବେଳେ ସହପାଠୀଙ୍କ ହାବୁଡରେ ପଡିଗଲେ ବିଚରା ବଡ଼ ଅପଦସ୍ତ ହେଉଥିଲେ । ଶୁଭଦତ୍ତ ମହାଲିକ, ଅଣୁଅଂଜନ ସଧର୍ମ ବା ସନ୍ଧିବିଗ୍ରହ ମହାରଣା ମୌକା ପାଇଲେ କର୍ମବୀରକୁ ଆଚ୍ଛାକରି ଭର୍ତ୍ସନା କରୁଥିଲେ । ଏଠାରେ କେଇପଦ ଉଦ୍ଧାର କରାଗଲା । ''ଶ' ତୁ କେବେ ଗୋଲକଙ୍କ ପୁତୁରା ହେଲୁ ବେ, ଖାଲିତ ବସିଲେ ଉଠିଲେ ମଉସା ମଉସା ହଉଚୁ । ମୋଟର ସାଇକେଲଟା ପୂରା ପାଇଗଲୁନା କ'ଣ ? ଗୁରୁଦ୍ରୋହ କରନା ବେ, ଧର୍ମ ସହିବନି । ଶ' ମଲାଲୋକଙ୍କ ଘରେ ମଧ୍ୟ ଭୋଟ ଲୋଭରେ ପହଞ୍ଚି ଯାଉଛୁ । ଏତେ ବେଲଜା, ବେହିଆ, ବେସରମିଆ, ହେଇଗଲୁଣି ?'

ଜଗଦୀଶ୍ୱର କାନଗୋଇଙ୍କ ନିର୍ବାଚନ ପ୍ରଚାର ଶିବିର ନୂଆଗଡ଼ ଅଞ୍ଚଳରେ ଅବସ୍ଥାପିତ ହେଇଥାଏ । ତାଙ୍କର ମୋଟର ସାଇକେଲ ଚଢ଼ାଳି ପ୍ରଚାରକ ନଥିଲେ । ସେ ଭୋଟ ପ୍ରଚାର ପାଇଁ ନିଜ ଶିବିର ଛାଡ଼ି ଗୋଡ଼କାଢ଼ି ପଦାକୁ ମଧ୍ୟ ଯାଉନଥିଲେ । ଧୂମକେଶ ମହାପାତ୍ର ପ୍ରଥମରୁ ଜଗଦୀଶ୍ୱରଙ୍କ ପ୍ରାର୍ଥୀତ୍ୱକୁ ସମର୍ଥନ ଜଣେଇ ମଝିରେ ଦଳବଦଳ କଲାଭଳି ଗୋଲକ ବିଦ୍ଧାଣିରତ୍ନଙ୍କ ଆଡ଼କୁ ଢ଼ଳିଗଲେ । ଧୂମକେଶ ଥିଲେ ସତରେ ଧୂମକେଶ, ପ୍ରଭଞ୍ଜନ ଭଳି ତାଙ୍କ ଗତି ଓ ପ୍ରବୃତ୍ତି । ନିର୍ବାଚନ ପ୍ରଚାରବେଳେ ଜଗଦୀଶ୍ୱରଙ୍କ ପାଇଁ ତାଙ୍କ ମୁଖ୍ୟ ସମର୍ଥକଙ୍କ ଅସହଯୋଗ ଏକ ବଡ଼ ଧକ୍କା ହେଲା । ଜଗଦୀଶ୍ୱର କିନ୍ତୁ ମୁହଁ ତୋଡ ଛାଡୁନଥିଲେ । ସେ କହୁଥିଲେ ଏମିତିରେ ଭୋଟ ପ୍ରଚାର କରି ଧର୍ମପଦ ପୁରସ୍କାର ପାଇ ଲାଭ ବା କ'ଣ ? ସେ ସକାଳ ସନ୍ଧ୍ୟା ଶିବିରରେ ଉପସ୍ଥିତ ରହି କୂଟନୀତି ପ୍ରୟୋଗ ମାଧ୍ୟମରେ ଧର୍ମପଦ ପୁରସ୍କାର ଜିଣିଯିବାର ଆଶା ରଖିଥଲେ । ଶିକ୍ଷୀ ମହାସଂଘ ଅଫିସ ବିଗତଦିନର ତାଙ୍କ ଚରାଭୂମି ହେଇଥିବାରୁ ଖୁବ୍ ସମ୍ଭବଃ ସେଇଠାରୁ ଭୋଟ ପ୍ରଚାରର ଅଗ୍ରଗତି ସଂପର୍କରେ ସବିଶେଷ ବିବରଣ ପାଇ ପାରୁଥିଲେ । ତାଙ୍କୁ ନିର୍ବାଚନରେ ସାହାଯ୍ୟ କରିବା ପାଇଁ ପ୍ରମଥ ଚତୁର୍ବେଦୀ ଓ ଲେଖ ଚରଣ ସରକାର ସହମତି ଦେଇଥିଲେ ବି ଭୋଟ ମଇଦାନରେ ସେମାନଙ୍କୁ ଦେଖିବାକୁ ମିଳୁ ନଥିଲା ।

ଧର୍ମପଦ ପୁରସ୍କାର ଚୟନ ପ୍ରକ୍ରିୟା ଯଦିଓ ଭୋଟ ରାଜନୀତି ପର୍ଯ୍ୟାୟରେ ଏଥର ପହଞ୍ଚିଯାଇଥିଲା, ତଥାପି ସାଧାରଣ ସଭାମାନ ଅନୁଷ୍ଠିତ ହେବା, କାନ୍ଥରେ ରଙ୍ଗିନ ପୋଷ୍ଟର ମରାଯିବା ବା ରାସ୍ତାରେ ଘାଟରେ ପ୍ରାର୍ଥୀଙ୍କର ପୂର୍ଣ୍ଣାବୟବ ଚିତ୍ର ଥାଇ ଫ୍ଲେକ୍ସି ଟଙ୍ଗାଯିବା ପର୍ଯ୍ୟନ୍ତ କଥାଯାଇ ନଥିଲା । ଧର୍ମପଦ ପୁରସ୍କାର ପ୍ରାର୍ଥୀମାନେ ଘର ଘର ବୁଲି ଭୋଟ ପ୍ରଚାର କରୁଛନ୍ତି ବୋଲି ମଝିମଝିରେ ଅଭିଯୋଗ ଖବରକାଗଜରେ ପ୍ରକାଶ ପାଉଥିଲେ ମଧ୍ୟ କୌଣସି ପ୍ରାର୍ଥୀ ଏଥିରେ ପ୍ରତିବାଦ କରିନଥିଲେ ।

ପ୍ରଥମରୁ ମନେହେଉଥିଲା ରୂପାନନ୍ଦ ଗଂଗମ ଏ ନିର୍ବାଚନ ରଣାଙ୍ଗନରେ ସକ୍ରିୟ ଭାଗ ନେବେନାହିଁ । କିନ୍ତୁ ଧୂମକେଶ ବେଳେବେଳେ ଗଂଗମଙ୍କ ଘନିଷ୍ଠ ସହଯୋଗୀ ଚେଲପତି ଦେବକୁଳଙ୍କୁ ଟେଲିଫୋନ ଯୋଗେ ଧର୍ମପଦ ଭୋଟ ପ୍ରଚାରର ଅଗ୍ରଗତି ସଂପର୍କରେ ହତାଶପୂର୍ଣ୍ଣ କଥାମାନ କହୁଥିଲେ । 'ଦେବକୁଳ ଦେଖ ଗୋଲକ ପଞ୍ଚସ୍ତରି ଯାଏଁ ପହଞ୍ଚିଗଲେଣି । ଜଗଦୀଶ୍ୱର କହୁଥିଲେ ତାଙ୍କର ପଚାଶ ଷାଠିଏ ପର୍ଯ୍ୟନ୍ତ ଗଲାଣି । ତମେ ବଡ଼ଗଡ଼ରେ ଶୋଇରହି ଟେଲିଭିଜନ୍ ଦେଖିଲେ ଚଳିବନି । ଗଂଗମ ହଇରାଣ ହେଇଯିବ ।' ସମୁଦାୟ ଭୋଟରଙ୍କ ସଂଖ୍ୟା ଶହେଅଶିରୁ ନବେ ଭିତରେ । ଏଣୁ ଧୂମକେଶ ଚେଲପତିଙ୍କୁ ଅଙ୍କକଷା କରେଇ ଅତ୍ରଛା କରିଦେଉଥିଲେ । ଚେଲପତି ସହଜରେ ଭଳିକି ଯିବା ବ୍ୟକ୍ତି ନଥିଲେ । ସେ ନିର୍ବାଚନ ପ୍ରଚାରକୁ ଜୋରଦାର କରେଇବାପାଇଁ ଗଂଗମଙ୍କୁ ପ୍ରବର୍ତ୍ତେଇଲେ । ରମାରମଣ ଜନାର୍ଦ୍ଦନ ପ୍ରତିପକ୍ଷର ଜୋର୍‌ଦାର୍ ନିର୍ବାଚନ ପ୍ରଚାର ସଂପର୍କରେ ଗଂଗମଙ୍କୁ ସତର୍କ କରିଦେଲେ । ଏବେ ଚେଲପତି ଓ ରମାରମଣଙ୍କ ପରାମର୍ଶ ଗ୍ରହଣ ନ କରି ଗଂଗମଙ୍କ ଚାରା ନଥିଲା । ଗଂଗମ ଗୋଟିଏ ନୁହେଁ ଏକାଥରେ ତିନୋଟି ନିର୍ବାଚନ ଅଫିସ ଖୋଲିଦେଲେ, ଦୁଇଟି ଏକାମ୍ରନଗରୀରେ ଆଉ ଅନ୍ୟଟି ବାରାଣାସୀ କଟକରେ । କଟକ ନିର୍ବାଚନ ଅଫିସର ମୁଖ୍ୟ ଥିଲେ ଶିବଶରଣ ପାଣ୍ଡେ । ସିଏ ତାଙ୍କ ମହାନଦୀ ବିହାର ନିଜ ଘରୁ ନିର୍ବାଚନ ପରିଚାଳନା କରୁଥିଲେ । ତାଙ୍କର ଘନିଷ୍ଠ ସହଯୋଗୀ ଥିଲେ ମହେନ୍ଦ୍ର ମେଘବାହନ, କାଶୀଶ୍ୱର ଜଗତପତି, ପଦ୍ମଗନ୍ଧ ବୈରୀଗଂଜନ, ପ୍ରମୋଦ କୁମାର ମହାଜାତି ଓ ଗୌରଅଙ୍ଗ ସେନାନାୟକ ।

ରୂପାନନ୍ଦ ଓ ଚେଲପତି ଦେବକୁଳ ବିପଦ ଆଶଙ୍କା କରି ଏଥର ପ୍ରତ୍ୟହ ନିର୍ବାଚନ ପ୍ରଚାରରେ ବାହାରିଲେ । ଦେବକୁଳ ସମସ୍ତଙ୍କ ପାଖରେ ରୂପାନନ୍ଦଙ୍କ କୃତିତ୍ୱବଖାଣି ତାଙ୍କ ପାଇଁ ଭୋଟ ଭିକ୍ଷା କଲେ, ତାଙ୍କ ବକ୍ତବ୍ୟର ସାରାଂଶ ହେଲା :- 'ରୂପାନନ୍ଦ କଳିଙ୍ଗ ଦେଶରେ ଜନ୍ମଗ୍ରହଣ କରିଥିଲେ ବି ଜଣେ ଆନ୍ତର୍ଜାତିକ ଚିତ୍ରଶିଳ୍ପୀ । କଳିଙ୍ଗ କଳାକୁ ନେଇ ଦେଶବିଦେଶରେ ପ୍ରଦର୍ଶନ କରି ତାର ପ୍ରଚାର ପ୍ରସାରରେ ସେ ବ୍ରତୀ ହେଇଛନ୍ତି । ସେ ଆଧୁନିକ ଶିଳ୍ପୀ ହେଇଥିଲେ ବି କଳିଙ୍ଗର ପାରଂପରିକ କଳା ସଂପର୍କରେ ଗବେଷଣା କରି ବହୁଗ୍ରନ୍ଥ ରଚନା କରିଛନ୍ତି । ତାଙ୍କ ଶୈଳ୍ପିକ ବ୍ୟକ୍ତିତ୍ୱ କଳିଙ୍ଗର ପାରଂପରିକ କଳା ତଥା

ସାଂପ୍ରତିକ କଳାକୁ ନେଇ ପରିପୁଷ୍ଟ । ଗୋଲକ ବିନ୍ଧାଣି ଗଂଗମଙ୍କୁ ନ୍ୟୂନ କରି କହିବାର କୌଣସି ଯଥାର୍ଥତା ନାହିଁ । ଏହା ବ୍ୟତୀତ ସେ ଇନ୍ଦ୍ରପ୍ରସ୍ଥର ଜାତୀୟ କଳାମଣ୍ଡଳରେ ସଚିବ ଆସନ ଅଳଙ୍କୃତ କରି କଳିଙ୍ଗ ଦେଶର ଶିଳ୍ପୀଙ୍କ ଗୌରବ ବଢ଼େଇ ଦେଇଛନ୍ତି । ଉଦୟଗିରି ପାହାଡ଼ ତଳେ ତପୋବନ ଅଧ୍ୟୁଷିତ ଅଞ୍ଚଳରେ ଅଭିନବ ଚିତ୍ରକଳା ପ୍ରତିଷ୍ଠାନ ପ୍ରତିଷ୍ଠା କରି ବହୁ କଳିଙ୍ଗ ଯୁବଶିଳ୍ପୀଙ୍କର ଅଭ୍ୟୁଦୟରେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି । ଏଣୁ ସେ ହିଁ ଧର୍ମପଦ ପୁରସ୍କାର ପାଇବା ପାଇଁ ଯୋଗ୍ୟ ।'' ଅବଶ୍ୟ ରୂପାନନ୍ଦ ଗଂଗମ ଜଣେ ବିଶିଷ୍ଟ ଶିଳ୍ପୀ, ବିଦ୍ୱାନ ଓ ଲେଖକ ଭାବେ କଳିଙ୍ଗ ଦେଶର କୋଣେ ଅନୁକୋଣେ ପରିଚିତ ହୋଇଥିବାରୁ ଭୋଟ ଭିକ୍ଷା କରିବାରେ ଚୈଳପତିଙ୍କ ଅସୁବିଧା ହେଉନଥିଲା ।

ଗଂଗମ ନିଜେ ଭୋଟ ପ୍ରଚାର କଲାବେଳେ ନିଜ ସଂପର୍କରେ ନିଜେ ବଢ଼େଇ କରି କହିପାରନ୍ତିନି । ତାଙ୍କୁ ସଂଭ୍ରମ ଘାରିପକାଏ । ଚୈଳପତି ତାଙ୍କୁ ପ୍ରଶଂସା କରି କହିଲାବେଳେ ସିଏ ସାମାନ୍ୟ ହସିଦିଅନ୍ତି ବା ପାଖରେ ଥିବା ନିଜ ପ୍ରଦର୍ଶନୀ ପୁସ୍ତିକାରୁ ଖଣ୍ଡେ ଭୋଟର ବନ୍ଧୁଙ୍କୁ ବଢ଼େଇ ଦିଅନ୍ତି । ଯେଉଁଠି ବୟସର ଚର୍ଚ୍ଚା ହୁଏ ଓ ଗୋଲକଙ୍କ ବୟସ ବେଶି ବୋଲି ଆସ୍ଫାଳନ କରାଯାଏ ସେ ଭାବପ୍ରବଣ ହୋଇ କୁର୍ତ୍ତା ଉପରକୁ ଉଠେଇଦେଇ ଛାତି ଓ ପେଟର ଅପରେସନ୍ ଦାଗଗୁଡିକ ଦେଖେଇ ଦିଅନ୍ତି । ଏଠି ପାଠକଙ୍କ ଗୋଚରାର୍ଥେ ପ୍ରକାଶ କରିବା ସମୀଚୀନ ହେବ ଯେ ଗଂଗମ ଏ ଭିତରେ ତିନୋଟି ଅପରେସନ କରେଇ ସାରିଲେଣି । ସେଥିରୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ହେଲା, ଛାତି ଓ ପେଟ । ଭଦ୍ରତା ଦୃଷ୍ଟିରୁ ଗଂଗମ ତାଙ୍କ ତୃତୀୟ ଅପରେସନ୍ ଜାଗାଟି ଦେଖଉ ନଥିଲେ ।

ସଂଧ୍ୟାବେଳେ ନିର୍ବାଚନ ପ୍ରଚାରରୁ ଫେରି ଗଂଗମ, ଚୈଳପତି ଓ ଦଳର ଅନ୍ୟାନ୍ୟ ସଦସ୍ୟ ଯଥା ଜୟକୁମାର ଭଟ୍ଟ, ଅଣୁ ଅଂଜନ ସମର୍ଥା, ସନ୍ଧି ବିଗ୍ରହ ମହାରଣା, ଗଜଇନ୍ଦ୍ର ପଡିଆରୀ ପ୍ରଭୃତି ଶୁଭଦତ୍ତ ମହାଳିକଙ୍କ ଘରେ ଢ଼େର ସମୟଯାଏଁ ବସି ଦିନଯାକର ଘଟିଥିବା ଘଟଣାକ୍ରମ ସଂପର୍କରେ ତର୍ଜମା କରନ୍ତି ଏବଂ ତା'ପରଦିନର କାର୍ଯ୍ୟକ୍ରମ ମଧ୍ୟ ଏଠାରେ ସ୍ଥିର କରାଯାଏ ।

ରାଜଦ୍ୱାର ଓ ଶ୍ମଶାନ ସାଙ୍ଗରେ ଯୋଡି ହେଲାଭଳି ନିର୍ବାଚନ ରଣାଙ୍ଗନ ଅନ୍ୟ ଗୋଟିଏ ବନ୍ଧୁତା ଦୃଢ଼ୀକରଣର କ୍ଷେତ୍ର । କେବଳ ରାଜଦ୍ୱାର ଓ ଶ୍ମଶାନରେ ଯିଏ ଉପସ୍ଥିତ ହେଲା, ସହାନୁଭୂତି ପ୍ରଦର୍ଶନ କଲା ସିଏ ଖାଲି ବନ୍ଧୁ ନୁହେଁ, ନିର୍ବାଚନ ବୈତରଣୀ ପାରିହେବାରେ ଯେ ସହାୟକ ହେଲା ସିଏ ମଧ୍ୟ ବନ୍ଧୁ । ଏଣୁ ନିର୍ବାଚନ ବେଳେ ବନ୍ଧୁ ଓ ଶତ୍ରୁ ଚିହ୍ନିହୁଏ । ପ୍ରାର୍ଥୀ ଗୋଟିଏ ନିର୍ଦ୍ଦିଷ୍ଟ ଭୋଟରକୁ ତା ଜୀବନର ବିକାଶରେ ଯେତେ କରି ସାହାଯ୍ୟ କରିଥାଉ, ହାତ ଧରି ରାସ୍ତାରେ ଚାଲିବାର ଶିଖେଇଥାଉ, ଜ୍ଞାନାଞ୍ଜନ ଲଗେଇ ଦେଇ ସଂସାରର ବାସ୍ତବତା ପ୍ରତି ଆଖିଖୋଲି ଦେଇଥାଉ ଓ ରାଜଦ୍ୱାରେ ଠିଆହୋଇ ତା ପାଇଁ ଭିକ୍ଷାମାଗି ବଂଚିବାର ମାର୍ଗ

ଓ ସାମର୍ଥ୍ୟ ଯୋଗାଡ଼ କରିଦେଇଥାଉ ନିର୍ବାଚନ ବେଳେ ଏଥିରୁ କୌଣସି ଗୋଟିଏ ହେଲେ ଉପକାର କୃତଘ୍ନ ଭୋଟରଙ୍କ ମନେପଡେନାହିଁ। ପରବର୍ତ୍ତୀ ସମୟରେ ଯଦି ପାନରୁ ଚୂନ ଟିକିଏ ଖସିଯାଇଛି ତାହା ସମସ୍ତ ସଂପର୍କକୁ ଛିନ୍ନ କରିଦିଏ। ଭୋଟ ପ୍ରଚାର ବେଳେ ଗଂଗମ ଏଭଳି ବହୁ ଅସ୍ୱାଭାବିକ ଘଟଣାମାନଙ୍କର ସମ୍ମୁଖୀନ ହେଲେ। ନିର୍ବାଚନୀ ସାନ୍ଧ୍ୟ ସଭାରେ ଖୁବ୍ ଭାବପ୍ରବଣତାର ସହିତ ଏଗୁଡ଼ିକ ଆଲୋଚିତ ହୁଏ। ସେଥିରୁ କେତୋଟି ମାତ୍ର ଏଠି ଉଲ୍ଲେଖ କରାଗଲା। ଜଣେ ଭୋଟର-ଛାତ୍ର କହିଲା ମୁଁ ଗଂଗମ ସାର୍‌ଙ୍କୁ ମୋ ଧର୍ମପଦ ଭୋଟ ନିଷ୍ଚୟ ଦେଇଥାନ୍ତି। କିନ୍ତୁ ମୁଁ ମୋ ସ୍ତ୍ରୀଙ୍କ ଦ୍ୱାରା ପ୍ରତାରିତ ହୋଇ ଜେଲଦଣ୍ଡ ଭୋଗୁ ଥିଲାବେଳେ ମୋତେ ମୁକୁଳେଇବା ପାଇଁ ଗଂଗମ ସାର୍ ମୋ ପାଇଁ କ'ଣ ବା କରିଛନ୍ତି ? ମୋ ସପକ୍ଷରେ ଥରେ ହେଲେ ସେ ବିବୃତି ଦେଇନାହାନ୍ତି କିମ୍ବା ମୋତେ ଭେଟିବା ପାଇଁ ଜେଲ ଦୁଆର ମାଡିନାହାନ୍ତି। ଏଣୁ ମୋ ଭୋଟଟି ତାଙ୍କୁ ନ ଦେଇ ମୁଁ ଗୋଲକ ବିହାରିରତ୍ନଙ୍କୁ ଦେବି। ଆଉ ଜଣେ ଗଂଗମଙ୍କ ପୁରୁଣା ସହକର୍ମୀ କହିଲେ ଚିଲିକା ମହାବିଦ୍ୟାଳୟର ସୁବର୍ଣ୍ଣ ଜୟନ୍ତୀ ସ୍ମାରକୀ ଗ୍ରନ୍ଥ ଛପାହେଲା ବେଳେ ଗଂଗମ ତାର ମୁଖ୍ୟ ସଂପାଦକ ଥିଲେ ଏବଂ ମୋତେ ଅପମାନିତ କରିବା ପାଇଁ ସେ ରାଜ୍ୟପୁରସ୍କାର ପାଇଥିବା ଶିକ୍ଷୀଙ୍କ ତାଲିକାରେ ମୋ ନାମ ସୁଦ୍ଧା ଉଲ୍ଲେଖ କଲେନାହିଁ। ଏହାଫଳରେ ଛାତ୍ରଛାତ୍ରୀ ଓ ଅଧ୍ୟାପକଙ୍କ ମହଲରେ ମୋ ପତିଆରା କମିଗଲା। ଆଉ ଜଣେ ଗଂଗମଙ୍କ ଅତି ଅନ୍ତରଙ୍ଗ ବନ୍ଧୁ କହିଲେ, କାହିଁ ମୁଁ ରାଜ୍ୟ ପୁରସ୍କାର ପାଇବା ପାଇଁ ଗଂଗମ ମହାସଂଘର ମଣ୍ଡଳାଧୀଶ ଥିବାବେଳେ କିଛି ବୋଲି ଚେଷ୍ଟା କଲେ ନାହିଁ। ଏଣୁ ଯିଏ ମୋତେ ବରିଷ୍ଠ ଶିକ୍ଷୀଭାବେ ସମ୍ମାନିତ କରି ଭୋଟରଟିଏ ହେବାର ଗୌରବ ଦେଇପାରିଛି, ସିଏ ଯାହାକୁ କହିବ ମୁଁ ତାକୁ ହିଁ ଭୋଟଦେବି। ଗଂଗମଙ୍କୁ ନୁହେଁ। ବଡ଼ଗଡ଼ ଅଞ୍ଚଳରେ ରହୁଥିବା ଜଣେ ଭୋଟର ତାଙ୍କ ଅନେକ ଦିନର ସଂଚିତ କ୍ଷୋଭ ଏବେ ପ୍ରକାଶ କରିଦେଲେ। ତାଙ୍କ କ୍ଷୋଭର କାରଣ ହେଲା ଗଂଗମ ଭାରତ ଉତ୍ସବ ଦାୟିତ୍ୱରେ ଥିଲାବେଳେ ତାଙ୍କୁ ବିଦେଶ ଯିବାର ସୁଯୋଗ ଦେଇନାହାନ୍ତି। ଏଣୁ ଗଂଗମଙ୍କୁ ଭୋଟ ଦେବାର କୌଣସି ଯଥାର୍ଥତା ନାହିଁ। ଆଚମ୍ବିତ ଲାଗିଲା ଏ ବନ୍ଧୁମାନଙ୍କର ଯୁକ୍ତି ଓ ଦାବୀ। ଏସବୁ କଥା ହୁଏତ ଅଭିମାନରେ ଗଂଗମଙ୍କୁ କୁହାଯାଇପାରେ କିନ୍ତୁ ନିର୍ବାଚନରେ ଭୋଟ ନଦେଇ ପ୍ରତିଶୋଧ ନେବା ବନ୍ଧୁତାର ଅବମାନନା ନିଷ୍ଚୟ। ଗଂଗମ ଏବେ ଉପଲବ୍ଧ କରିପାରିଲେ ତାଙ୍କର ଏକଦା ଛାତ୍ର ଓ ସହକର୍ମୀମାନଙ୍କ ପାଖରେ ତାଙ୍କ ସ୍ଥିତି। ଯେଉଁ ସଂପର୍କକୁ ଅତୁଟ ରଖିବା ପାଇଁ ସେ ଜୀବନସାରା ପ୍ରୟାସ କରି ଆସିଛନ୍ତି, ତା'ର ମୂଲ୍ୟ ଏ ଦେଣନେଣ ଯୁଗରେ କିଛି ନୁହେଁ। ଦଳେ ଅପରିପକ୍ୱ, ଅର୍ବାଚୀନ ଚିତ୍ରବେପାରୀଙ୍କ ହାତରେ ଧର୍ମପଦ ପୁରସ୍କାର ପାଇବା ପାଇଁ ଯୋଗ୍ୟ ଶିଳ୍ପୀ ଜଣକର ଭାଗ୍ୟଡୋରୀ। କବି ରବି ସିଂହଙ୍କ ଭାଷାରେ -

ଯାଦୁଆ ବିକୁଛି ଯାଦୁର ମଲମ, ଦେଖ !
ମଦୁଆ ଧରିଛି 'ନିଶା ନିବାରଣ' ବାନା,
ଗଣିକା 'ବେଶ୍ୟାବୃତ୍ତି ନିରୋଧ'- ନେତ୍ରୀ
ଉତ୍କଟ-ଗଣତନ୍ତ୍ରେ ଅନାରେ ଅନା !!

\+ + + +

ଆମେ ବିକିପାରୁ ଇଜ୍ଜତ, ଆମଭୋଟ-
ଲୁଣ୍ଠକ ହାତେ ସବୁ ଦେଇପାରୁ ଟେକି,
ଦୁଃଖ-କଷ୍ଟର ବୁଟ-ଗୋଇଠିରେ ଦଳି-
ହୋଇପାରୁ ଆମେ-ରୁଟି ସମ ନିତି ସେକି ।

କଳିଙ୍ଗ ଦେଶର ବହୁ ପ୍ରାତଃ ସ୍ମରଣୀୟ ଶିଳ୍ପୀ ଧର୍ମପଦ ପୁରସ୍କାର ପାଇବା ଆଗରୁ ପରଲୋକ ଗମନ କରିଛନ୍ତି । ତାଙ୍କ ଯଶଃ, ମାନ ଓ ପ୍ରତିପତ୍ତିରେ କ'ଣ ବା ଊଣା ହେଇଯାଇଛି । ମନେହୁଏ ଭବିଷ୍ୟତରେ ଯେଉଁଶିଳ୍ପୀମାନେ ଧର୍ମପଦ ପୁରସ୍କାର ପାଇଁ ପ୍ରାର୍ଥୀ ହେବେ ସେମାନଙ୍କୁ ଭୋଟର ମାନେ ପଚାରିବେ ତମେ ମୋ ପାଇଁ କ'ଣ କରିଛ ଯେ ମୁଁ ତମକୁ ଭୋଟ ଦେବି ? ଚୟନ ତ୍ରୟୀରେ ସାମିଲ ହେଇପାରି ନଥିବା ବରିଷ୍ଠ ଶିଳ୍ପୀ ଚନ୍ଦ୍ରଶେଖର ଅବଧାନଙ୍କ ପାଖରେ ଏ ପ୍ରକାର ପ୍ରଶ୍ନର କୌଣସି ଉତ୍ତର ନାହିଁ । ଏଭଳି ଭୋଟ ଘୂର୍ଣ୍ଣି ଭିତରେ ଥରେ ପଡିଗଲେ ଯେତେ ସହଜ ସରଳ ଶିଳ୍ପୀଟିଏ ହେଇଥାଉ ପଛେ ଆପେ ଆପେ ରାଜନେତାଟିଏ ପାଲଟିଯିବ । ମୁହଁରେ କୋଟିଏ ଟଙ୍କାର ମୁରୁକୁନ୍ଦ ହସ ଆଉ ବିନମ୍ରତାର ପ୍ରକଟ ପାଇଁ ଯୋଡ଼ ହସ୍ତ ହେଇ ଫିନ୍‌ଫିନ୍ କୁର୍ତ୍ତା ପାଇଜାମା ପିନ୍ଧି, ମୁଣ୍ଡର ଧଳାବାଳକୁ କଳା ମଚମଚ କରି, ନିଶରେ ଆଇବ୍ରୋ ପେନ୍‌ସିଲ ମାରି, ବେକରେ ମକମଲି ଫୁଲର ମାଳ ଗଳେଇ ହେଇ ଖୋଲାଜିପ୍‌ରେ ଧର୍ମପଦ ପ୍ରାର୍ଥୀ ନିର୍ବାଚନ ପ୍ରଚାରରେ ବୁଲିବେ । ସାଥିରେ ଚାମଚାଙ୍କ ମଧ୍ୟରୁ ଦଳେ ଓ ବାହୁବଳିନ୍ଦ୍ରଙ୍କ ଭିତରୁ ଗଣ୍ଡେ ଥିବେ । ଚାମଚାଙ୍କ ଭୟରେ ଭୋଟରେ କହିବେ ରୂପାନନ୍ଦ ଗଂଗମ ଜିନ୍ଦାବାଦ୍ ! ଜିନ୍ଦାବାଦ୍ ! ଜିନ୍ଦାବାଦ ! ବା ଆରପଟକୁ ପଲା ଭାରି ହେଇଗଲେ କହିବେ ଜଗଦୀଶ୍ୱର ଜିଣିବେ, ଜିଣିବେରେ ଜିଣିବେ । ମାଇକର ଗର୍ଜନରେ କାନ ଅତଡା ପଡିଯିବ । କେତେ ଗୀତ ଭଣତା ହେବ, ଧର୍ମପଦ ସିଡ଼ି ବିକା ହେବ । ପୁଣି ବେଳେ ବେଳେ ଲଙ୍କାରେ ହରିଶଙ୍ଖ ଭଳି ଶୁଣାଯିବ ଗୋଲକ ବିହାରୀ ଯେଉଁଠି ଭୋଟ ଦେବ ସେଇଠି ।

ଏସବୁ ପ୍ରତାରଣା ସତ୍ତ୍ୱେ ରୂପାନନ୍ଦ ଗଂଗମ ଧର୍ମପଦ ପୁରସ୍କାର ପାଇଲେ ।

ହିକ୍କା ଉଠେଇଲେ ଛେପ ଯିମିତି ଗଳାରେ ଅଟକିଯାଏ ସିମିତି ଧର୍ମପଦ ପୁରସ୍କାର କଳିଙ୍ଗ ଶିଳ୍ପୀ ମହାସଂଘର ତୋଟିରେ ଅଟକି ରହିଗଲା । ମନେହେଲା ସ୍ୱୟଂ ମଣ୍ଡଳାଧିକାରୀ ନିଜେ କୀଟ ସାଜି ପୁରସ୍କାରକୁ ଗଳା ଭିତରେ ଜାବୁଡ଼ି ଧରି ଅଟକେଇଛନ୍ତି ।

କୌଣସି ପୁରସ୍କାରଟିଏ ପାଇଲା ପରେ ମନରେ ଯେତିକି ଉଚ୍ଚାଟନ ହେବାକଥା, ଆତ୍ମପ୍ରତ୍ୟୟ ବଢ଼ିବା କଥା, ଓ ପ୍ରାଣ ପୁଲକିତ ହେବାକଥା ତାହା ଗଂଗମଙ୍କ କ୍ଷେତ୍ରରେ ଘଟିନଥିଲା । ସିଏ କିମ୍ବଦନ୍ତୀରେ ଗୁନ୍ଥା କାଳ୍ପନିକ ତ୍ୟାଗ ଓ ପରାକାଷ୍ଠାର ଅମୂଳକ ଦ୍ୟୋତନା ତଥା ଇତିହାସର ବାସ୍ତବ କ୍ରୂର ସତ୍ୟ ଭିତରେ ସନ୍ତୁଳି ହେବାକୁ ଲାଗିଲେ । ଯାହାକୁ ପାଇବା ପାଇଁ ସେ ଯଥାର୍ଥ ଭାବେ ନିଜକୁ ଯୋଗ୍ୟ ମଣୁଥିଲେ ଏବଂ ପାଇବା ପାଇଁ ଉତ୍କଣ୍ଠାର ସୀମା ମଧ୍ୟ ନଥିଲା ତାକୁ ହାତ ପାଆନ୍ତାରେ ପାଇ ମଧ୍ୟ ସେ ଉତ୍‌ଫୁଲ୍ଲିତ ହେଇପାରି ନଥିଲେ । ସିଏ ଭାବିଥିଲେ ଧର୍ମପଦ ପୁରସ୍କାର ପରମ୍ପରାର ଏକ ବିସମ୍ବାଦିତ ବୋଝ । ସେ ତାକୁ ମୁଣ୍ଡରେ ମୁଣ୍ଡେଇ ଜୀବନସାରା ଏକ ମିଥ୍ୟା ଶୈଳ୍ପିକ ଅପବାଦର ଶରବ୍ୟ କାହିଁକି ବା ହେଇଥାନ୍ତେ । କାହାନ୍ତି ଧୂରନ୍ଧର ସୃଜନଶୀଳ ବିନ୍ଧାଣି ସୂତ୍ରଧର ସଦାଶିବ ଓ ତାଙ୍କ ଯୋଗଜନ୍ମା ପୁତ୍ର ଧରମ ମହାପାତ୍ର ଆଉ କେଉଁଠି ଆଜିକାଲିର କାରିଗର ଯେଉଁମାନେ କୋଣାର୍କ ସୂର୍ଯ୍ୟରଥର ଚକକୁ ସହସ୍ରବାର ରୋମନ୍ଥନ କରି ନିଜ ଶୈଳ୍ପିକ ପରାକାଷ୍ଠାର ଡିଣ୍ଡିମ ପିଟି ଚାଲୁଥିବା ଶିଳ୍ପୀ । ଗୋଟିଏ ପଟେ ବିଶ୍ୱର ବିସ୍ମୟ, ଭଗ୍ନସ୍ତୂପରୁ ଦାଉଦାଉ ଉତୁରି ପଡୁଥିବା ସୂର୍ଯ୍ୟଙ୍କ ପାଷାଣ ରଥ, ଅନ୍ୟପଟେ ଜଣେ ସାଧାରଣ ଚିତ୍ରକର ଗଂଗମ, ଓ ତାଙ୍କ ଠାରୁ ଶତଗୁଣ ନ୍ୟୁନ ଆଧୁନିକ ଶିଳ୍ପୀ; ପେଟରେ ପେଟେ ଅଭିମାନ, ଅମର ହେବାର ବୃଥା ଆସ୍ଫାଳନ ଓ କିଛି ସେଭଳି ଅଲୋଡ଼ା ଆବୃତ୍ତି ।

କିମିତି କିଏ ଜଣେ ନିଜ ଭିତରୁ କହିଲା ଭଳି ଲାଗିଲା । ଗଂଗମ ! ତମେ ଧର୍ମପଦ ପୁରସ୍କାର ପାଇବା ଆଗରୁ ଆଉ ଥରେ କୋଣାର୍କକୁ ନୂଆ ଆଖିରେ ଦେଖିଆସ । ବୁଝିବାକୁ ଚେଷ୍ଟାକର କୋଣାର୍କ କେବଳ ଗୋଟିଏ ବୀରୋଚିତ ସ୍ମୃତିର ଭଗ୍ନ ମନ୍ଦିର ନୁହେଁ ବା ପର୍ଯ୍ୟଟକଙ୍କ ବିଳାସ ଭୂଇଁ ନୁହେଁ, ତାହା ଗୋଟିଏ ଜାତିର ଶିଳ୍ପବୈଭବ ବା ମର୍ଯ୍ୟାଦାର ପ୍ରତୀକ କେବଳ ନୁହେଁ, ବରଂ ଅସଂଖ୍ୟ ଶିଳ୍ପୀ ପ୍ରାଣର ବିଳପିତ ଭାଷା, ଅସାମର୍ଥ୍ୟତା ଓ ଅସହାୟତାର ପୁଞ୍ଜିଭୂତ ବେଦନା । ଏହା ରାଜାର ବିଜୟ ହର୍ମ୍ୟ ନୁହେଁ ବରଂ ସାଂଗଠନିକ ପରାଜୟର ଏକ ଦୁଃଖଦ କାହାଣୀ ଏଠି ଛତ୍ରେ ଛତ୍ରେ କାଳଖଣ୍ଡର ପ୍ରତ୍ୟେକ ଅଣୁରେ ଲିପିବଦ୍ଧ । ବେଳେବେଳେ ମନେହୁଏ କୋଣାର୍କ ବାସ୍ତବ ନୁହେଁ, ତାହା କେବଳ ଆଗଗନ ସ୍ପର୍ଶୀ ଆସ୍ପୃହାର ଏକ କ୍ଷଣିକ ଉଦ୍ଦାମ ସଂଗୀତ ।

କୋଣାର୍କକୁ ତା'ର ନିଜ ପରିପ୍ରେକ୍ଷୀରେ ଉପଭୋଗ କରିବାକୁ, ଦେହରେ, ମନରେ ଓ ପ୍ରାଣରେ କିଛିଟା କୋଣାର୍କ ଚିଏଁଇ ଦେବା ପାଇଁ ଗଂଗମ ସେଠି ପହଞ୍ଚିଲେ । ସଂଧ୍ୟା ଗଡଗଡ ହେଇ ଆସୁଥିଲା । ଚତୁର୍ଦ୍ଦଶୀର ଜହ୍ନ ଆଉ କିଛି ସମୟ ପରେ ତା' ରଜତ ପିଠଉର ମାୟାରେ କୋଣାର୍କର ସତ୍ତାକୁ ଡୁବେଇ ଦେବ । ଖୋଦିତ ପଥରଖଣ୍ଡମାନ ଶୁଭ୍ର ସ୍ଫଟିକ ଖଣ୍ଡଭଳି ଜହ୍ନକିରଣର ଚାଦର ତଳେ ସତରେ ଭାସିବୁଲିବେ । କୋଣାର୍କ ତା ସ୍ଥାଣୁତା ହରେଇ ବାଙ୍ମୟ ହୋଇଯିବ । ବାଟୋଇକୁ ସିଏ ତା ନିଜ ଜୀବନ ସଂଗୀତ ଶୁଣେଇବା ପାଇଁ ଉଦ୍‌ବିଗ୍ନ ହେବ । ଗଂଗମ ଏଭଳି ଗୋଟିଏ ନିକାଞ୍ଚନ ମୁହୂର୍ତ୍ତ ଚାହୁଁଥିଲେ ଯେତେବେଳେ ତାଙ୍କ ମନ ଭିତରେ ବର୍ଷ ବର୍ଷ ଧରି ସଂଚିତ ପ୍ରଶ୍ନ ଆଜି କୋଣାର୍କକୁ ପଚାରିବେ । ନିଜ ସନ୍ଦେହ ମୋଚନ କରିବା ପାଇଁ ସିଏ ଚେଷ୍ଟା କରିବେ । ତାଙ୍କ ପାଇଁ କୋଣାର୍କ ପାଲଟିଯିବ ଅବଶିଷ୍ଟ ଜୀବନର ଏକ ନୂତନ ସଂଜ୍ଞା । ଧରମାର ଦୁଃଖରେ ନିଜେ ଭାଗୀ ହେବା, ଧର୍ମପଦ ପୁରସ୍କାର ପାଇଲାପରେ ଧରମାର ଅତୃପ୍ତ ଆତ୍ମାର ସାକ୍ଷୀ ହେବା ନିଶ୍ଚିତ ଭାବେ ଗଂଗମଙ୍କ ନିୟତି ।

ଗଂଗମ କୋଣାର୍କରେ ନୂଆ ନୁହଁନ୍ତି । କର୍ତ୍ତବ୍ୟର ତାଡନାରେ ବହୁବାର ବହୁ ସମୟ କୋଣାର୍କ ବେଢ଼ାରେ କଟିଛି । ବହୁ ଦେଶୀ ଓ ବିଦେଶୀ ପର୍ଯ୍ୟଟକଙ୍କୁ କୋଣାର୍କର ଇତିହାସ ଓ ତା'ର ଶିଳ୍ପଚାତୁରୀର ଗରିମାରେ ଅନୁପ୍ରାଣିତ କରେଇ ପାରିଛନ୍ତି । ଆଜି କିନ୍ତୁ କୋଣାର୍କ ସହିତ ଏକାତ୍ମହେଇ ସିଏ ଜୀବନର କେତୋଟି ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତ ଏକାନ୍ତ ଭାବେ କଟେଇବାପାଇଁ ଚାହୁଁଛନ୍ତି । ଗଂଗମ ଜଣେ ଅଚିହ୍ନା ପର୍ଯ୍ୟଟକ ଭାବେ କୋଣାର୍କକୁ ପ୍ରଦକ୍ଷିଣ କରିବାକୁ ଲାଗିଲେ । ବିପୁଳବପୁର ହାତୀ, ଧାବମାନ ଘୋଡ଼ା, ପରାକ୍ରମୀ ସିଂହ, କ୍ଷୀଣକଟି ନର୍ତ୍ତକୀ, ଲାସ୍ୟମୟୀ ଅଳସା, ପ୍ରେମଦଗ୍ଧ ମିଥୁନଯୁଗଳ, ପ୍ରଚଣ୍ଡ ପ୍ରତାପୀ ଗଜସିଂହ, ଅଭୁତପୂର୍ବ ବିରାଜ, ଅପୂର୍ବ ପଦ୍ମମଣ୍ଡଳ, କମନୀୟ ରଥଚକ, ସବୁ ନୂଆ ନୂଆ ଲାଗିଲା । ପ୍ରତ୍ୟେକଙ୍କ ଗୋଟିଏ ଗୋଟିଏ ଅବ୍ୟକ୍ତ ଭାଷା ଅଛି, ବୋଧ ହେଲା । ସେମାନଙ୍କୁ ରଚିଥିବା ଶିଳ୍ପୀମାନେ ଗଂଗମଙ୍କୁ କିଛି ନିଜକଥା କହିବା ପାଇଁ ଚାହୁଁଥିଲେ ।

ଗଂଗମ ସେମାନଙ୍କୁ ଆଶ୍ୱାସନା ଦେବା ଭଙ୍ଗୀରେ କହିଲେ, ହଁ ତମ କଥା ଶୁଣିବା ପାଇଁ ତ ଧାଇଁ ଆସିଛି କୋଣାର୍କର କୋଳକୁ, କିନ୍ତୁ ତା ଆଗରୁ ତମେମାନେ ମୋର କେତୋଟି ସନ୍ଦେହ ମୋଚନ କର ।

ଗଂଗମ ସମ୍ବୋଧନ କଲେ, ହେ ଶିଳ୍ପୀକୁଳ ଶ୍ରେଷ୍ଠ ସୂତ୍ରଧର ସଦାଶିବ ! ସତରେ ତମେ କ'ଣ ଏତେ ଅସମର୍ଥ ଥିଲ ଯେ ନିଜର ହାତଗଢ଼ା ଗୋଟିଏ ମନ୍ଦିରର ମୁଣ୍ଡି ନିଜେ ମାରି ପାରିଲନି ? ମୁଁ ତ କଳ୍ପନାରେ ସୁଦ୍ଧା ଆକଳନ କରିପାରୁନି ଏଭଳି କିଛି ଅଘଟଣ ଘଟିଥିବ ବୋଲି । ଯୋଦ୍ଧୃଅଶ୍ୱ ଭାସ୍କର୍ଯ୍ୟରେ ଯେଉଁ ରଣ-ଉଦ୍ଦାମତା ଭରି ରହିଛି, ତା'ର ପ୍ରତ୍ୟେକ ଖୁରା ତଳେ ଔଦ୍ଧତ୍ୟର ଯେଉଁ ପରାକାଷ୍ଠା ଫୁଟି ଉଠୁଛି, ଲଗାମର ଟାଣ ଭିତରୁ ହ୍ରେସାରବର ଯେଉଁ ଉନ୍ମାଦନା ଉତୁରି ପଡୁଛି; ବେକି, ଆମଳକ, ଖପୁରି ଓ କଳଶ ଗଢ଼ଣରେ ତା'ର ଲେଶମାତ୍ର ଶିଳ୍ପଚାତୁରୀ ଅଛି ବୋଲି ମୁଁ ଭାବୁନି । ତଥାପି ତମେ ପାରିଲନି ? ଆଚମ୍ବିତ ଲାଗେ ଶିଳ୍ପୀକୁଳ ପୁଙ୍ଗବଙ୍କ ଏ ଅସହାୟତା । ଆସ ମୋର ନମସ୍ୟ, ଆସ ମୋ ଆଖିରେ ପୁଣି ଥରେ ନିଜର କୋଣାର୍କକୁ ନିକାଞ୍ଚନ ମୁହୂର୍ତ୍ତରେ ଦେଖ । ଅନୁଭବ କର ତମେ ମନ୍ଦିର

ନିର୍ମାଣରେ ଏତେ ନିମଗ୍ନ ରହିଥିଲ ଯେ ରସିକର ସ୍ୱପ୍ନବୋଳା ଆଖିରେ ଥରେ ହେଲେ ହୁଏତ ତମ ସୃଷ୍ଟିକୁ ଉପଭୋଗିବାର ସୁଯୋଗ ପାଇନ । ତୁମ ଭଳି ଶ୍ରେଷ୍ଠୀଙ୍କୁ କିବା ଅଧିକ କହିବି ! କଳା ଓ କବିତାକୁ ବାରମ୍ୱାର ଅବଲୋକନ କରିବାକୁ ହୁଏ, ଆଘ୍ରାଣ କରିବାକୁ ହୁଏ ଏବଂ ଅନୁରଣନ କରିବାକୁ ହୁଏ । ଗଜସିଂହ ମୂର୍ତ୍ତିର କି ଅପୂର୍ବ ଠାଣି, ଓଜଃ ଓ ତେଜସ୍ୱର କି ଅଭିନବ ପରିକଳ୍ପନା, ଝାମ୍ପସିଂହର କି ଅମାପ ପରାକ୍ରମ, ରଥଚକ୍ରର କି ଅଦ୍ଭୁତ ଗତିଶୀଳତା, ବିରାଜର କି ଅପରିସୀମ କୌତୁହଳତା, ମିଥୁନ ଯୁଗଳର କି ଅନ୍ତରଙ୍ଗ ଆବିଷ୍ଟତା ! ଏ ସବୁର କଳାତ୍ମକତା ତୁଳନାରେ ଦଧିନଉତି ଏକ ସାମାନ୍ୟ ସ୍ଥାପତ୍ୟ-ଶିଳା ଖଣ୍ଡେ ମାତ୍ର । ତଥାପି ଏତେ ପ୍ରବୀଣ କାରିଗର ବେଢ଼ାରେ ଉପସ୍ଥିତ ରହି ମଧ୍ୟ ତାକୁ ଦେଉଳ ଉପରେ ଥୋଇପାରିଲେନି ଆଉ ବାଳକ ଧରମ ମହାପାତ୍ର ପାରିଗଲେ ବୋଲି ତାଙ୍କୁ ହତ୍ୟା କରିବା ଅନିର୍ବାର୍ଯ୍ୟ ହୋଇ ପଡ଼ିଲା ? ପୁଣି ଗୋଟିଏ ଦେଶ, ଗୋଟିଏ ଜାତି ଏଭଳି ଏକ ଜଘନ୍ୟ ହତ୍ୟାଘଟଣାକୁ ମନେରଖିବା ପାଇଁ ପୁରସ୍କାରର ବ୍ୟବସ୍ଥା ! ନିଜକୁ ନିଜେ ଅପମାନିତ କରିବା, ଲଜ୍ଜିତ ଆଉ ଘୃଣିତ କରିବାର ଅଭିନବ ପରମ୍ପରା ଏ ଧର୍ମପଦ ପୁରସ୍କାର । ବାରଶହ ଶିଳ୍ପୀମାନଙ୍କ ପରାଜୟର କାହାଣୀ ଯେମିତି ଅସାମର୍ଥ୍ୟତାର ପ୍ରତିଛବି, ଏ କୋଣାର୍କର ସୂର୍ଯ୍ୟରଥ ବି ସେମିତି, ଏ ପୁରସ୍କାର ତହୁଁ ବଳି ।

ଏ ରାଜ୍ୟର ଅନ୍ୟ କୌଣସି ପ୍ରାଚୀନ କୀର୍ତ୍ତିକୁ କେନ୍ଦ୍ର କରି ଏଭଳି ଅସଂଲଗ୍ନ, ଅସଂଯମର କାହାଣୀ ତ ଶୁଣାଯାଏନି । ସେଠି ବି ତ ଓଡ଼ିଆ ଶିଳ୍ପୀଙ୍କ ଶିଳ୍ପ ପରାକାଷ୍ଠାର ନିଦର୍ଶନ କୌଣସି ଗୁଣରେ ନ୍ୟୂନ ନୁହେଁ । ମନ୍ଦିର ନିର୍ମାଣରେ ଗୋଟିଏ ଜାତି ତ ମାହିର । ଗୋଟିଏ ନୁହେଁ କୋଟିଏ ମନ୍ଦିରର କର୍ଣ୍ଣଧାର ଏ ଓଡ଼ିଆ ଜାତି । ମନ୍ଦିର ନିର୍ମାଣ ସହିତ ଶହ ଶହ, ହଜାର ହଜାର ବର୍ଷର ଶିଳ୍ପସାଧନା ଜଡ଼ିତ । କେତେ ଶିଖର, ପିଢ଼, ଆମଳକ, କଳଶ, ଦଧିନଉତି ଗଢ଼ା ହୋଇନଥିବ । ସବୁଗୁଡ଼ିକ ପୁଣି ତ ଯେଝା ସ୍ଥାନରେ ଯେଝା ସମୟରେ ଖପି ଯାଇ ପାରିଲେ । କୋଣାର୍କ ବେଳକୁ ଏମିତି କଣ ଅଡୁଆ ହୋଇଗଲା ଯେ ଜଣେ ନିଷ୍ପାପ ବାଳକକୁ ହତ୍ୟା କରିବାକୁ ପଡ଼ିଲା । ମୋର ଏ ପ୍ରଶ୍ନ ସମଗ୍ର ଶିଳ୍ପୀକୁଳ ପାଇଁ । ଦୀର୍ଘ ଆଠଶହ ବର୍ଷ ଧରି ଏହା ଅମୀମାଂସିତ । ଅନ୍ତତଃ ଆଜି ସତ୍ୟର ଉଦ୍‌ଘାଟନ ହେଉ ।

ଗଂଗମ ଯେତେଯେତେ କୋଣାର୍କକୁ ନିଠେଇ ନିଠେଇ ଦେଖୁଛନ୍ତି, ତାର ସ୍ଥପତି ବିଜ୍ଞାନରେ, ନିର୍ମାଣ ପ୍ରକଳ୍ପରେ ଭାସ୍କର୍ଯ୍ୟ ସଂଯୋଜନାରେ ସେତେ ସେତେ ଅସଂଗତି ଆଖିରେ ପଡୁଛି । କୋଣାର୍କର ସୂର୍ଯ୍ୟରଥ ଯଦି ଅନୁପାତିକତା, ବିନ୍ୟାସ, ଓ ପ୍ରତିସାମ୍ୟର ଶ୍ରେଷ୍ଠ ନିଦର୍ଶନ ତାହେଲେ ରଥର ସାତୋଟି ଅଶ୍ୱକୁ ଚାରି ତିନି ଭାଗ କରିବାରେ କି ଯଥାର୍ଥତା ଥିଲା । ପୁଣି ଧାବମାନ ଅଶ୍ୱଙ୍କ ଆଗରେ ସ୍ଥିର, ସ୍ଥବିର ନାଟ ମଣ୍ଡପଟିଏର ପରିକଳ୍ପନା କରିଦେଇ ଅଶ୍ୱ ଓ ରଥର ଗତିରୋଧ କରିବାର କ'ଣ ବା ଉଦ୍ଦେଶ୍ୟ ଥାଇପାରେ ? ନାଟ ମଣ୍ଡପକୁ ମଧ୍ୟ ଗତିଶୀଳ କରାଇ ଦେଇଥିଲେ କି ଅସୁବିଧା ବା ଉପୁଜିଥାନ୍ତା ମନ୍ଦିର ପ୍ରକଳ୍ପରେ ? ଏକମାତ୍ର ରଥାରୂଢ଼ ସୂର୍ଯ୍ୟଙ୍କ ପରିକଳ୍ପନାରେ ଅନ୍ୟରଥର ଉପସ୍ଥିତି ସୂର୍ଯ୍ୟଙ୍କ ଗୁରୁତ୍ୱକୁ କ'ଣ ନ୍ୟୂନ କରିଦେଇଥାନ୍ତା ? ହେ ସଦାଶିବ ମହାଭାଗ ! ତମକୁ ହୁଏତ ଆଜିଯାଏଁ ଏଭଳି ପ୍ରଶ୍ନ ପଚାରିବା ପାଇଁ କିଏ ସାହସ କରିନଥିବେ । ହେ ସୂତ୍ରଧର ତମେ ହିଁ ମୋ ଅଡୁଆ ପ୍ରଶ୍ନମାନଙ୍କର ଉତ୍ତର ଦେବାରେ

ସମର୍ଥ ହେଇପାରିବ । ଶିଳ୍ପୀକୁଳ ଶ୍ରେଷ୍ଠବୋଲି, ଅତି ଆପଣାର ବୋଲି ତମେ କହି ସଂବୋଧନ କଲି । ଦୋଷ ଧରିବନି ।

ସତୀର୍ଥ ଗଂଗମଙ୍କ ପ୍ରଶ୍ନଗୁଡ଼ିକ ସଦାଶିବ ଖୁବ୍ ଧୈର୍ଯ୍ୟର ସହିତ ସେତେବେଳଯାଏଁ ଘେନୁଥିଲେ । ସୂତ୍ରଧର ଏଥର ପାଟି ଖୋଲିଲେ । କହିଲେ ଶିଳ୍ପୀବନ୍ଧୁ ଗଂଗମ, ତମେ ମାତ୍ର ଜଣେ ଆଧୁନିକ ଶିଳ୍ପୀଟିଏ ହେଇଥିଲେ ତମ ସହିତ ବାର୍ତ୍ତାଳାପ କରିବା ପାଇଁ ମୁଁ କୁଣ୍ଠା କରିଥାନ୍ତି । ଏଭଳିକି ତମେ ଯଦି ବି ପାରମ୍ପରିକ ଶିଳ୍ପୀ ପରିବାରରେ ଜନ୍ମହେଇ ଚର୍ବିତ ଚର୍ବଣରେ ବ୍ୟାପାରିକ-ଜୀବନ ବିତେଇଥାନ୍ତ ତା' ହେଲେ ବି ମୋ ଉତ୍ତର ତମଠାରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରି ନଥାନ୍ତା । ମୁଁ ଜାଣେ ତମେ ଜଣେ ଆଗ୍ରହୀ ଗବେଷକ, ଜିଜ୍ଞାସୁ ଏବଂ କୋଣାର୍କ ସୂର୍ଯ୍ୟମନ୍ଦିରର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟକଳା ସଂପର୍କରେ ମୋଟାମୋଟି ଭାବେ ଅବହିତ । ଏଣୁ ମୁଁ ତମର ସମସ୍ତ ସନ୍ଦେହ ଦୂର କରିବା ପାଇଁ ଯଥାସାଧ୍ୟ ଚେଷ୍ଟା କରିବି । ତମ ଗୋଚରାର୍ଥେ ମୁଁ ପୁଣି କହିରଖେ, ମନ୍ଦିର ନିର୍ମାଣ ବେଳର ସବୁ ପ୍ରମୁଖ ଶିଳ୍ପୀ, ପୃଷ୍ଠପୋଷକ ମହାଶ୍ରମ ନରସିଂହ ଓ ପରବର୍ତ୍ତୀ କାଳର ମନ୍ଦିର ସଂପର୍କରେ ଗବେଷଣା କରିଥିବା ପ୍ରାୟ ଅଧିକାଂଶ ଗବେଷକମାନେ ଅଶରୀରରେ ମନ୍ଦିର ବେଢ଼ାରେ ହିଁ ରହିଛନ୍ତି । ମୁଁ ଯାହା ପାରିବିନି, ତା'ର ସମାଧାନ ପାଇଁ ସେମାନଙ୍କ ସାହାଯ୍ୟ ନେବି । ଏଣୁ ମୋ ଚିନ୍ତା ଏକ ସାମଗ୍ରିକ ଶିଳ୍ପ ସଚେତନାର ନିର୍ଯ୍ୟାସ ବୋଲି ଗ୍ରହଣୀୟ ହେବା ଉଚିତ ।

ସୂତ୍ରଧରଙ୍କ ବଦାନ୍ୟତାରେ ଗଂଗମ ଅତ୍ୟନ୍ତ ଆଶାୟୀ ହେଇଉଠିଲେ ଏବଂ ବିଚାରିଲେ, ଏମିତି ଗୋଟିଏ ବେଳାରେ କୋଣାର୍କ ବେଢ଼ାରେ ପାଦ ଦେବା ତାଙ୍କ ପାଇଁ ଆଶୀର୍ବାଦସଦୃଶ ହେଇଛି । ଗଂଗମ ଅତିଶୟ ଆତୁର ପରବଶ ହେଇ ସୂତ୍ରଧରଙ୍କ ବକ୍ତବ୍ୟକୁ ଅପେକ୍ଷା ନ କରି ପୁଣି ପ୍ରଶ୍ନ ପଚାରିବା ଆରମ୍ଭ କଲେ । ଏବେ କିନ୍ତୁ ସୂତ୍ରଧରଙ୍କ ଉତ୍ତୁଙ୍ଗ ପ୍ରତିଭା ଓ ନିଜର ଅକିଞ୍ଚନ ସ୍ଥିତି ସଂପର୍କରେ ପୂର୍ଣ୍ଣ ସଚେତନ ହୋଇ ସେ ଆଉ ତମେ କହି ସମ୍ବୋଧନ କରିବାକୁ କୁଣ୍ଠା କଲେ ।

ସୂତ୍ରଧର ମହାଶୟ କହନ୍ତୁ ଆପଣ ନିଯୋଗିଥିବା ବାରଶ' କାରିଗରଙ୍କ ମଧ୍ୟରୁ ଅଧିକାଂଶ ହିନ୍ଦୁ ଥିଲେ । କିନ୍ତୁ ବିଭିନ୍ନ ଧର୍ମମତବାଦକୁ ନେଇ ସେମାନଙ୍କ ଭିତରେ କେବଳ ମତାନ୍ତର ନୁହେଁ, ମନାନ୍ତର ମଧ ଥିଲା । ସେମାନଙ୍କ ଭିତରେ ଥିଲେ ସୌର ଓ ଗାଣପତ୍ୟ, ଶାକ୍ତ ଓ ତାନ୍ତ୍ରିକ, ଶୈବ ଓ ପାଶୁପତ । ଅବଶ୍ୟ ସେମାନେ ସମସ୍ତେ ସମଭାବରେ ଇଚ୍ଛାଶକ୍ତି ପ୍ରୟୋଗ କରିବା ଫଳରେ ଏବଂ କଳିଙ୍ଗର ଜନସାଧାରଣଙ୍କ ତ୍ୟାଗ ଓ ନିଷ୍ଠା ଯୋଗୁଁ ମନ୍ଦିର ନିର୍ମାଣ ସିନା ଶେଷ ହେଇଗଲା, ତାନ୍ତ୍ରିକମାନେ ନିଜ ସ୍ୱାର୍ଥସିଦ୍ଧି ଦୃଷ୍ଟିରୁ ଚାହୁଁଥିଲେ ନରବଳି ଏବଂ ଧରମାର ଆତ୍ମହତ୍ୟା ଶାକ୍ତ ନରବଳିର ଏକ ବିଭ୍ରାନ୍ତିକର ରୂପ ନୁହେଁତ ? କାରଣ କୌଣସି ପ୍ରକଳ୍ପର ଆରମ୍ଭରେ ବା ଶେଷରେ ନରବଳି ଦିଆଯାଉଥିବା ବିଷୟ ଆମେ ବହୁ ଲୋକକଥାରୁ ଜାଣିବାକୁ ପାଇଛୁ । ନରବଳି କୁଆଡ଼େ ମନ୍ଦିରର ସ୍ଥିରତା ଓ ଦୃଢ଼ତା ଆଣିଦିଏ ।

ସୂତ୍ରଧର ଉତ୍ତର ଫେରେଇଲେ । ଧର୍ମ ମହାପାତ୍ରଙ୍କ ଆତ୍ମହତ୍ୟା ଯେତେବେଳେ କପୋଳ କଳ୍ପିତ ଏବଂ କାବ୍ୟିକ ପ୍ରକାଶ ମାତ୍ର ସେତେବେଳେ ଶାସ୍ତ୍ର କିମ୍ବା ତନ୍ତ୍ର ନରବଳିର ପ୍ରଶ୍ନଇ ଉଠୁନାହିଁ । କୋଣାର୍କର ସୂର୍ଯ୍ୟମନ୍ଦିର ଗୋଟିଏ ଜାତିର ସାମୂହିକ ସୃଜନ ଉତ୍ସ । ସେଥିରେ କୌଣସି ବ୍ୟକ୍ତିଗତ ଶିଳ୍ପୀସତ୍ତାର ପ୍ରଶ୍ନ ମଧ ନଥିଲା । ଆଜିର ଶିଳ୍ପ ପରିଭାଷାରେ ଏଭଳି ଏକ ସାମୂହିକ ସୃଜନ କର୍ମକୁ ଶିଳ୍ପ ବା ଲଳିତ କଳା କହିବାରେ ବି ବାଧା ଉପୁଜିପାରେ । ସୂର୍ଯ୍ୟ ମନ୍ଦିର ନାନ୍ଦନିକତାର ନିରୋଳା ଉତ୍ସ ନଥିଲା । ଏଭଳିକି ବ୍ୟକ୍ତିଗତ ଶୈଳ୍ପିକ ପ୍ରୌଢ଼ିର ସ୍ଥାନ ବି ଏଠି ନଥିଲା । କୋଣାର୍କ -ସୂର୍ଯ୍ୟମନ୍ଦିରର ନିର୍ମାଣ ପାଇଁ କୌଣସି ବ୍ୟକ୍ତିବିଶେଷ କେବେହେଲେ ନିଜ ବାହାଦୂରୀ ନେବାର ଅବକାଶ ନାହିଁ । କୋଣାର୍କ ମନ୍ଦିର ନିର୍ମାଣ ବେଳଠାରୁ ମନ୍ଦିରରେ ସୂତ୍ରଧର ଭାବେ ମୋ ନାଁ ଓ ଦେଉଳର ମୁଣ୍ଡି ମାରିଥିବା ଯୁବଶିଳ୍ପୀ ଭାବରେ ମୋ ପୁଅ ଧର୍ମ ମହାପାତ୍ରର ନାଁ ଜନଶ୍ରୁତିରେ ତିଷ୍ଠି ରହିଥିଲା । ଏହି କିଛି ବର୍ଷ ହେଲା ବୟଚକଡା ତାଳପତ୍ର ପୋଥିର ଆବିଷ୍କାର ଫଳରେ ବହୁ ଶିଳ୍ପୀଙ୍କ ନାଁ,ଗାଁ ସବୁ ଉନ୍ମିବୀତ ହେଇଉଠିଲା, ସମଗ୍ର ମନ୍ଦିର ନିର୍ମାଣର ବିବରଣ ପ୍ରାଞ୍ଜଳ ହୋଇ ଉଠିଲା । ତମେ ଯେଉଁ ଧର୍ମପଦ କଥା କହୁଚ ସିଏ ପୁଣି କିଏ ? ସିଏ ତ ନିଶ୍ଚିତ ଭାବେ କୋଣାର୍କର ଧରମା ବା ଧର୍ମ ସାମନ୍ତରାୟ ମହାପାତ୍ର ନୁହେଁ, ହୁଏତ ଆଖପାଖ ଗାଁର ଆଉ କିଏ ଜଣେ ବାରବର୍ଷର ଅଜ୍ଞାତ ସାଧାରଣ ବାଳକ ହେଇଥାଇପାରେ । ସିଏ ହୁଏତ ନିଜ ଉତ୍ସୁକତାକୁ ସାକାର କରିବା ପାଇଁ ମନ୍ଦିର ଚୂଡାରେ ପହଞ୍ଚିଥିବ ଏବଂ ନିଜ ଅସାବଧାନତାରୁ ଗୋଡ ଖସି ତଳେ ପଡିଯାଇ ମୃତ୍ୟୁବରଣ କରିଥିବ । ତମେ ପୁଣି ଅନ୍ୟ ଏକ ଅଜବ ସମସ୍ୟା ଆଣି ଥୋଇଲଣି । ତମେ କହୁଚ ଯେ ତମେ କୁଆଡେ କୋଣାର୍କର ଯୁବଶିଳ୍ପୀ ଧରମା ସ୍ମୃତିରେ ଉଦ୍ଦିଷ୍ଟ ଧର୍ମପଦ ପୁରସ୍କାର ପାଇଛ । ଏହା କଦାପି ଶାସ୍ତ୍ର ସମ୍ମତ ନୁହେଁ । ଏ ପୁରସ୍କାର ସଂପୂର୍ଣ୍ଣ ମିଥ୍ୟା ଏବଂ ଏହାର କୌଣସି ଐତିହାସିକତା ନାହିଁ । ଏକେତ ଗଂଗମ ଧର୍ମପଦ ପୁରସ୍କାର ଓ ତା'ର ଚୟନ ପ୍ରକ୍ରିୟାର ବୈଧତାକୁ ନେଇ ଚିନ୍ତିତ ଥିଲେ । ଏବେ ସୂତ୍ରଧରଙ୍କ ଶେଷ ବାକ୍ୟଗୁଡିକ କଟାଘା'ରେ ଚୂନ ଦେଲାଭଳି ହେଲା । ସିଏ ଏବେ ବିଚାରିଲେ ଓଡ଼ିଆଜାତିର ଇତିହାସକୁ ବିଭ୍ରାନ୍ତ କରୁଥିବା, ଉଦ୍ଦେଶ୍ୟ ପ୍ରଣୋଦିତ ଏଭଳି ଗୋଟିଏ ପୁରସ୍କାର ଗ୍ରହଣ କରିବେ ନା ଅସ୍ୱୀକାର କରିବେ ଏ ସମ୍ମାନ । ତାଙ୍କର ଯେଉଁ ବନ୍ଧୁମାନେ ଏତେ ପରିଶ୍ରମ କରି ତାଙ୍କ ପାଇଁ ଏ ପୁରସ୍କାର ପାଇବାର ପଥ ସୁଗମ କରି ଦେଇଛନ୍ତି ସେମାନେ ଏ ପୁରସ୍କାର ପ୍ରତ୍ୟାଖ୍ୟାନ କରିବାକୁ ଗଂଗମଙ୍କୁ ସୁଯୋଗ ଦେବେନି । ପୁଣି ଯେଉଁ ଶିଳ୍ପୀମାନେ ଗଂଗମଙ୍କ କୃତିତ୍ୱ ଓ ସାମର୍ଥ୍ୟରେ ବିଶ୍ୱାସ ରଖି ତାଙ୍କୁ ମନୋନୟନ କରିଛନ୍ତି ଗଂଗମ ପୁରସ୍କାର ଗ୍ରହଣ ନକଲେ ସେମାନେ ନିଶ୍ଚୟ ହତାଶ ହେବେ । କାରଣ ଏ ପୁରସ୍କାର ଥିଲା ମିଛ ପରମ୍ପରା ଓ ସଚ୍ଚୋଟ ଆଧୁନିକତାର ଲଢ଼େଇ । ଗଂଗମ ଏବେ ନ ଯଯୌ ନ ତସ୍ଥୌ ଅବସ୍ଥାରେ ପଡିଲେ । ନିଜକୁ ଚିନ୍ତାରୁ ମୁକୁଳେଇବା ପାଇଁ ସେ ଏଥର ନିଜର ଦ୍ୱିତୀୟ ପ୍ରଶ୍ନପାଖକୁ ଗଲେ ।

ଆଚ୍ଛା ସୂତ୍ରଧର ମହାଶୟ କହନ୍ତୁ ସୂର୍ଯ୍ୟମନ୍ଦିର କ'ଣ କେବେ ସତରେ ପ୍ରତିଷ୍ଠା ହେଇଥିଲା, ନା ଏହା ଏକ ଅଶୁଭ ଶକୁନର ମନ୍ଦିର ଯେଉଁଠାରେ ଦିନେ ହେଲେ ସୂର୍ଯ୍ୟ ଦେବତା ପୂଜା ପାଇନାହାନ୍ତି ।

ତେଣୁ ହୁଏତ ଧର୍ମପଦ ପୁରସ୍କାର ପାଉଥିବା ଶିଳ୍ପୀମାନେ ପୁରସ୍କାର ପାଇବାର ଅଳ୍ପଦିନର ବ୍ୟବଧାନରେ ମୃତ୍ୟୁବରଣ କରୁଛନ୍ତି । ଧର୍ମପଦ ପୁରସ୍କାର ଲାଗୁଛି ମୃତ୍ୟୁକାଳୀନ ଏକ ଜମାନବନ୍ଦୀ । ଆଠଜଣ ପୁରସ୍କାର ପ୍ରାପ୍ତ ଶିଳ୍ପୀଙ୍କ ମଧ୍ୟରୁ ଏବେ ପାଞ୍ଚଜଣ ପରଲୋକରେ । ଗଂଗମଙ୍କ ପ୍ରଶ୍ନ ଶୁଣି ସୂତ୍ରଧର ଖୁବ୍ ଜୋର୍‌ରେ ଅଟ୍ଟହାସ କଲେ । ସାମାନ୍ୟ ସ୍ଥିତାବସ୍ଥାକୁ ଆସିଲାପରେ କହିଲେ, ପୁରସ୍କାର ପାଇବା ନ ପାଇବା ସହିତ ଜନ୍ମ-ମୃତ୍ୟୁର କୌଣସି ସଂପର୍କ ନାହିଁ । ତମେ ନିଶ୍ଚୟ ସଚେତନ ଥିବ ଯେ ଧର୍ମପଦ ପୁରସ୍କାର ପାଇନଥିବା ବହୁ ଶିଳ୍ପୀଙ୍କର ମଧ ଏ ସମୟର ଅବଧି ଭିତରେ ମୃତ୍ୟୁ ଘଟିଛି ଏବଂ ତମରି ବୟାନ ଅନୁସାରେ ଆଠଜଣରୁ ତିନିଜଣ ପୁଣି ତ ଜୀବିତ ଅଛନ୍ତି । ଏଣୁ ପୁଣି ଥରେ ଦୋହରାଉଛି । ତମେ ପାଇଥିବା ତଥାକଥିତ ଧର୍ମପଦ ପୁରସ୍କାର ଏବଂ ଜୀବନ ଓ ମୃତ୍ୟୁ ସହିତ କୋଣାର୍କ ମନ୍ଦିରର କୌଣସି ସଂପର୍କ ନାହିଁ । ହଁ ତମର ସନ୍ଦେହ ମୋଚନ କରିବା ପାଇଁ ମୋତେ ଅତ୍ୟନ୍ତ ଦୃଢ଼ତାର ସହିତ କହିବାକୁ ପଡୁଛି ଯେ ମାଘ ଶୁକ୍ଳସପ୍ତମୀ ଦିନ ମନ୍ଦିର ପ୍ରତିଷ୍ଠା ହୋଇଥିଲା ଏବଂ ସୂର୍ଯ୍ୟମନ୍ଦିରର ମୁଖଶାଳା ଓ ନାଟମଣ୍ଡପର ମଧରେ ଅବସ୍ଥିତ ଦୁଇଟି ଯୂପସ୍ତମ୍ଭ ଏହାର ଅକାଟ୍ୟ ପ୍ରମାଣ । ଆମର ପୁରୋହିତ ସର୍ବସ୍ୱ କହେ ଯୂପସ୍ତମ୍ଭ ସ୍ଥାପନା ବିନା ମନ୍ଦିର ପ୍ରତିଷ୍ଠା ସମ୍ଭବ ନୁହେଁ ।

ସୂର୍ଯ୍ୟମନ୍ଦିର ଯଦି ପ୍ରତିଷ୍ଠିତ କୀର୍ତ୍ତି, ତା'ହେଲେ ଏବେ ଆପଣ ମୋର ଅନ୍ୟ ଗୋଟିଏ ସନ୍ଦେହ ମୋଚନ କରନ୍ତୁ; ଓଡ଼ିଶାର ଅନ୍ୟଦୁଇଟି ପ୍ରାଚୀନ ଓ ବିଶାଳ କୀର୍ତ୍ତି ଲିଙ୍ଗରାଜ କୃତିବାସ ଓ ପୁରୁଷୋତ୍ତମ ଜଗନ୍ନାଥଙ୍କ ମନ୍ଦିର ପ୍ରାୟତଃ ଅତୁଟ ଅବସ୍ଥାରେ ତିଷ୍ଠି ରହିଥିବା ବେଳେ କୋଣାର୍କର ସୂର୍ଯ୍ୟମନ୍ଦିର ଏଭଳି ନଷ୍ଟବିନଷ୍ଟ ହୋଇଗଲା କାହିଁକି ? ଏବଂ ଏଥି ପାଇଁ କାହାକୁ ମୁଖ୍ୟତଃ ଦାୟୀ କରାଯିବ । ପୁରୀ ଜଗନ୍ନାଥ ମନ୍ଦିର ବିବରଣ ଉଲ୍ଲେଖ ଥିବା ମାଦଳା ପାଞ୍ଜି କହେ ଯେ କଳାପାହାଡର ଆକ୍ରମଣରୁ ସୂର୍ଯ୍ୟମନ୍ଦିରର ଧନରତ୍ନ ବଂଚେଇବାକୁ ଯାଇ କିଳା ବୟାଳିସବାଟିର ଦଳବେହେରା ମନ୍ଦିର ଚୂଡାରେ ଥିବା ମୂଲ୍ୟବାନ ରତ୍ନର ପଦ୍ମକୁ କାଢ଼ିନେଲାପରେ ମନ୍ଦିରଟି ଆପେ ଆପେ ଭାଙ୍ଗିଗଲା । ଆଉ କିଏ କିଏ କହନ୍ତି ମନ୍ଦିର ଗାତ୍ରରେ ଖୋଦିତ ମିଥୁନ ମୂର୍ତ୍ତିଙ୍କ ଉପସ୍ଥିତି ମନ୍ଦିରକୁ ପ୍ରାକୃତିକ ତଥା ଦୈବୀ ବିପଦରୁ ଉଦ୍ଧାର କରିବା ପରିବର୍ତ୍ତେ ତା'ର ଧ୍ୱଂସର କାରଣ ହେଲା । ଆଉ କିଏ କହେ ନଦୀ ଗର୍ଭରେ ତରବରିଆ ଭାବେ ପଥର ପୋତି, ତା'ରି ଉପରେ ଏତେ ବିଶାଳ ହର୍ମ୍ୟଟିଏ ଗଢ଼ିଦେଲା ପରେ ପୁନାଦି ଭାର ସମ୍ଭାଳି ନପାରିବାରୁ ମନ୍ଦିର ଭୁଷୁଡି ପଡିଲା । ପୁଣି ଆଉ କେତେକ କହନ୍ତି ମନ୍ଦିରରେ ଖଞ୍ଜା ଯାଇଥିବା ଚୁମ୍ବକ ବଜ୍ରପାତକୁ ଆକର୍ଷଣ କରିବା ଫଳରେ ମୂଳ ମନ୍ଦିର ଧ୍ୱଂସ ପାଇଗଲା ।

ରୂପାନନ୍ଦ ଗଂଗମଙ୍କ ଉଦ୍ଭଟ ପ୍ରଶ୍ନରେ ସୂତ୍ରଧର ଏଥରବି ଉଚ୍ଚସ୍ୱରରେ ହସିଉଠିଲେ, କହିଲେ, ହେ କଳିଙ୍ଗ ଦେଶର ନବାଗତ ଶିଳ୍ପୀ, ତମର ସବୁଗୁଡିକ ପ୍ରଶ୍ନ ଏକାଭଳି ଅମୂଳକ । ମନ୍ଦିର ବିନଷ୍ଟ ହେବାର ମୂଳ କାରଣ ହେଲା ସେବା ପୂଜାରେ ଅବହେଳା । ସେବକମାନେ ନିୟମିତ ରୂପେ ମନ୍ଦିର ଆସିବା ବନ୍ଦ କରିଦେବା ଫଳରେ ସେମାନେ ମନ୍ଦିରର ଆବଶ୍ୟକୀୟ ମରାମତି ପାଇଁ ଧ୍ୟାନ ଦେଇପାରିଲେ ନାହିଁ । କୋଣାର୍କ ଭଳି ନିକାଞ୍ଚନ ଜାଗାରେ ଝଡ଼ ବର୍ଷା ଓ ବାତ୍ୟାରୁ ମନ୍ଦିରର ଶିଖରକୁ

ଉଦ୍ଧାର କରିବା ପାଇଁ ମୁଁ ଚୂନର ପ୍ରଲେପ ଦେଇଥିଲି । ପ୍ରତିବର୍ଷ ଯତ୍ନର ଅଭାବରୁ ଚୂନପରସ୍ତ ଛାଡିଗଲା । ତା'ଭିତର ଦେଇ ବର୍ଷାପାଣି ଶିଖରରେ ଭେଦିବାରୁ ପଥରମାନେ ଢୁଲୁଲା ହୋଇଗଲେ । ଏବଂ ସେଇଥିପାଇଁ ଝାମ୍ପସିଂହ ଦୁଇଟି ମନ୍ଦିର ଦେହରୁ ଖସି ତଳେ ପଡିଗଲା ଓ ତା'ର ପ୍ରଭାବରେ ମନ୍ଦିର କାନ୍ଥ ବି ଭାଙ୍ଗିଗଲା । ଏହା ଫଳରେ ପୂର୍ବ ଓ ଉତ୍ତର ଦିଗ କାନ୍ଥର କ୍ଷତିହେଲା । ପଶ୍ଚିମ ଓ ଦକ୍ଷିଣ ଦିଗର କାନ୍ଥଦ୍ୱୟ ପ୍ରାୟ ଶହେ କୋଡିଏ ଫୁଟ ଉଚ୍ଚଯାଏଁ ଉନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଠିଆ ହୋଇ ରହିଥିଲା । ଯଦି ବିଦେଶୀ ଆକ୍ରମଣରୁ ମନ୍ଦିର ଧ୍ୱଂସ ପାଇଥାନ୍ତା ତାହେଲେ ପଶ୍ଚିମ ଓ ଦକ୍ଷିଣ ଦିଗର ମନ୍ଦିର କାନ୍ଥଗୁଡିକ ମଧ୍ୟ ଏକାଭଳି ଦଶା ଭୋଗିଥାଆନ୍ତେ ।

ତମେ ଯେଉଁ ମିଥୁନ ମୂର୍ତ୍ତିଙ୍କ କଥା କହିଲ ସେମାନଙ୍କୁ ନେଇ ବିଭିନ୍ନ ବ୍ୟକ୍ତିଙ୍କ ବିଭିନ୍ନ ଭୁଲଧାରଣା ଅଛି । ମନେରଖ ସୃଷ୍ଟିର ମୂଳ ହେଲା ସ୍ତ୍ରୀ ଓ ପୁରୁଷଙ୍କ ରତିଲୀଳା । ମିଥୁନ ଓ ମୈଥୁନ କ୍ରିୟାରୁ ହିଁ ଏ ଜଗତର ଉତ୍ପତ୍ତି । ଏ ମୂର୍ତ୍ତିଗୁଡିକ ହେଲା ମଙ୍ଗଳ ଓ ଶୁଭର ପ୍ରତୀକ । ଯୌବନର ଉଦ୍ଦାମରେ, ପରସ୍ପରକୁ ବାହୁବନ୍ଧନରେ ଛନ୍ଦିଦେଇ, ସ୍ତନ, ଜଘନ ଓ ଦେହର ସ୍ପର୍ଶରେ ଜଣେ ଅନ୍ୟଜଣକୁ ଆନନ୍ଦ ପ୍ରଦାନ କରୁଥିବା ବିରଳ ମୁହୂର୍ତ୍ତର ରସାଣ ଚିତ୍ରଗୁଡିକ କିଭଳି ଯେ ମନ୍ଦିର ଧ୍ୱଂସର କାରଣ ହେବ ତା ଜଣାପଡୁନାହିଁ । ମନ୍ଦିରରେ ଖୋଦିତ ପ୍ରତ୍ୟେକଟି ଯୁଗଳବନ୍ଧ ଗୋଟିଏ ଗୋଟିଏ ତନ୍ତ୍ର ଆସନ । ଏହି ମୈଥୁନ ମୂର୍ତ୍ତିଗୁଡିକ ଗୋଟିଏ ଗୋଟିଏ କାମକଳା ଯନ୍ତ୍ରର ବାହ୍ୟପ୍ରକାଶ । ଏଣୁ ତା'ର ବାହ୍ୟ ସ୍ୱରୂପରେ ଭୋଳିକି ନଯାଇ ଅନ୍ତର୍ନିହିତ ଗୂଢ଼ ଅର୍ଥକୁ ବୁଝିବାକୁ ଚେଷ୍ଟାକଲେ ମୈଥୁନ ମୂର୍ତ୍ତିଗୁଡିକ ଆନନ୍ଦସ୍ୱରୂପ ଭଳି ମନେହେବ ।

କୋଣାର୍କ ମନ୍ଦିର ବେଢ଼ା ଜନମାନବଶୂନ୍ୟ । ଏହି ନିକାଞ୍ଚନ ଦେବକ୍ଷେତ୍ରରେ ଶୁଭ୍ରଜ୍ୟୋତ୍ସ୍ନାର ବିପୁଳ ଐଶ୍ୱର୍ଯ୍ୟ ଗଂଗମଙ୍କ ଅନ୍ତଃସ୍ଥିତିକୁ ବହୁଯୁଗ ଡେଇଁ ଆଦିମତା ଭିତରକୁ ନେଇଯାଉଛି । ଆଖିବୁଜିଦେଲେ ଦେଖାଯାଉଛି ଜୀବନର ଅପୂର୍ବ ସମ୍ଭାର । ବର୍ଣ୍ଣାଢ୍ୟରେ ଭରପୂର ବେଢ଼ା । କୋଳାହଳମୟ ସ୍ଥିତି । ବେଳେବେଳେ ମନେହେଉଛି ମହାରାଜା ନରସିଂହ ପାଟମହାଦେବୀ କୁସ୍ତରୀକାମୋଦିନୀଙ୍କୁ ସାଙ୍ଗରେ ନେଇ ରତ୍ନଖଚିତ ହାଉଦା ଉପରେ ବସି ପଟୁଆରରେ ବିଜେ ହେଉଛନ୍ତି । ସାଙ୍ଗରେ ରାଜଗୁରୁ, ଅମାତ୍ୟ ଓ ସେନାଧ୍ୟକ୍ଷ । ଆଉ ବେଳେ ଦେଖାଯାଉଛି ସୂତ୍ରଧର ସଦାଶିବ ସାମନ୍ତରାୟ କଳାମୁଗୁନୀ ପଥର ଉପରେ ପଦ୍ମାସନରେ ଉପବିଷ୍ଟ ସୂର୍ଯ୍ୟଦେବଙ୍କ ପୂଜାବିଗ୍ରହକୁ ଟିପଣାରେ ଠାରି ଦେଉଛନ୍ତି, ଏଣେ ମନ୍ଦିର ଚୂଡ଼ା ଉପରକୁ କଳଶର ଏଗାରୁପଛଖଣ୍ଡକୁ ଉଠେଇବା କାର୍ଯ୍ୟକୁ ଧରମା ତଦାରଖ କରୁଛି । ବଜନ୍ତ୍ରୀ କନ୍ୟାମାନେ ଝାଞ୍ଜ, ମର୍ଦ୍ଦଳ, କାହାଳୀ ଧରି ମନ୍ଦିରର ମୁଖଶାଳା ଉପରୁ ତଳକୁ ଉଦ୍ଦାମ ଭଙ୍ଗିରେ ଓହ୍ଲେଇ ଆସୁଛନ୍ତି । ନୃତ୍ୟଗୁରୁ ସୋମରାଜଙ୍କ ତତ୍ତ୍ୱବଧାନରେ ଶହେ ସରିକି ନର୍ତ୍ତକୀ ଓଡ୍ର-ନୃତ୍ୟ ଆରମ୍ଭିବାକୁ ତିଆର ହେଉଛନ୍ତି । ଆଖି ଖୋଲିଦେଲେ ସବୁ ମନେହେଉଛି ଶୂନ୍ୟ । ତଳେ ବାଲି ଉପରେ କଅଁଳିଆ ଦୁବଘାସ, ମଝିରେ ପଥରର ପାଗୋଡ଼ା ଓ ଉପରେ ନିର୍ଲିପ୍ତ ଆକାଶ । ରାତି ଗହରିଆ ହେଲାଣି । ଅଦୂରରେ ମହୋଦଧିର ଗର୍ଜନ ଓ ତା

ସାଙ୍ଗରେ ଭାସି ଆସୁଥିବା ଶୀତଳ ପବନ ତାଙ୍କୁ ସ୍ମୃତି ସହିତ ଜଡେଇ ରଖୁଛି । ସ୍ମୃତି ସବୁବେଳେ ବାସ୍ତବ ସ୍ଥିତିକୁ ମଧ୍ୟ ଦୋହଲାଇ ଦିଏ । ଜଣେ ଶିଳ୍ପୀର ବା ସ୍ରଷ୍ଟାର ପୁଞ୍ଜି ହେଲା ସ୍ମୃତି । ତା' ପାଇଁ ବାସ୍ତବତାର ସଂଜ୍ଞା ସଂପୂର୍ଣ୍ଣ ଅଲଗା । ସ୍ମୃତିଦଗ୍ଧ ନହେଲେ ବାସ୍ତବତା ବସ୍ତୁଚେତନାରୁ ଉତୁରି କାବ୍ୟଚେତନା ବା ଶିଳ୍ପ-ଚେତନାରେ ପରିଣତ ହୋଇପାରେ ନାହିଁ ।

ଗଂଗମ ବିଚାରିଲେ ସୂର୍ଯ୍ୟମନ୍ଦିର ବେଢ଼ାକୁ ସେ ରାତିର ସ୍ୱାଭାବିକ ପରିଣତି ଭିତରେ ଛାଡିଦେବା ଉଚିତ ହେବ । ଏଣୁ ସେ ସେଠୁ ଗୋଡ କାଢ଼ି ଅତିଥି ଭବନକୁ ମୁହେଁଇଲେ । ମନ୍ଦିର ପାଖରୁ ଅତିଥିଭବନ ଡାକେ ବାଟ । କୋଣାର୍କ ପଡାର ଦୋକାନ ବଜାର ବନ୍ଦ ହୋଇଗଲାଣି, କୁଲାକୁଟିମାନେ କ୍ଳାନ୍ତ ରାସ୍ତାଘାଟ ମାନଙ୍କ ଉପରେ ଅଖଣ୍ଡ ଆଧିପତ୍ୟ ବିସ୍ତାର କରିସାରିଲେଣି । ସବୁଆଡ଼େ ନୀରବତାର ସ୍ୱାକ୍ଷର । ଅଦୂରରେ ମହୋଦଧିର ଗୁରୁଗମ୍ଭୀର ଲହଡ଼ା କୂଳରେ ମଥା ପିଟିବାର ଶବ୍ଦ । ଅତିଥି ଭବନର ଦ୍ୱାର ରକ୍ଷକ ଗଂଗମଙ୍କୁ ଭଲ ଭାବରେ ଜାଣେ । ପ୍ରକୋଷ୍ଠର ଦ୍ୱାର ଆଉଜା ହୋଇଥିଲା । ଗଂଗମ ଦ୍ୱାର ଖୋଲି ପ୍ରକୋଷ୍ଠ ଭିତରେ ପଶିଲେ, ଦେଖିଲେ ରାତ୍ରିଭୋଜନ ଟେବୁଲ ଉପରେ ଘୋଡିଆ ହୋଇ ଥୁଆ ହୋଇଛି । ଖାଇବାବେଳ ଗଡିଯାଇଛି । ତାଙ୍କ ଭୋକ ମରିଯାଇଛି । ଖାଇବା ପାଇଁ ସେମିତି ଆଗ୍ରହ ନାହିଁ । ଜୋତା ଖୋଲି ସେମିତି ପିନ୍ଧିଥିବା ପୋଷାକରେ ଶେଯରେ ଗଡିପଡିଲେ । ଆଉ ଆଖିବୁଜି ନିଦକୁ ଅପେକ୍ଷା କଲେ । ଚେଷ୍ଟାକରି କ'ଣ ନିଦକୁ ପାଇହୁଏ ? ହୁଏତ ପୁରସ୍କାର କଥା ଅଲଗା । ମନେପଡିଲା କିଏ ଜଣେ ବିଶିଷ୍ଟ ବ୍ୟକ୍ତି କହୁଥିଲେ କୁଆଡ଼େ ପୁରସ୍କାରରେ ଆକସ୍ମିକତା ମନରେ ଉଦ୍‌ବେଳନ ଆଣିଦିଏ । ସେଥିରେ କୁଆଡ଼େ ଜୀବନର ସାର୍ଥକତା ଅଛି । ଗଂଗମ ଯୋଡ଼ି ବସିଲେ ତାଙ୍କ ଜୀବନରେ ମିଳିଥିବା ପୁରସ୍କାରମାନଙ୍କ ମଧ୍ୟରେ ଆକସ୍ମିକ କିଏ ପୁଣି ପୂର୍ବାନୁମାନ କିଏ ? କୌଣସି ପୁରସ୍କାର ନିରଙ୍କୁଶ ନୁହେଁ, ତିରସ୍କାରମୁକ୍ତ ନୁହେଁ । ପୁରସ୍କାର ଏକ ବୈଷୟିକ ଜଂଜାଳ । କଳା ବା ସାହିତ୍ୟ ପୁରସ୍କାର ଠାରୁ ବହୁ ଊର୍ଦ୍ଧ୍ୱରେ । ସେ ଧୀରେ ଧୀରେ ଚିନ୍ତାର କୁଣ୍ଡଳୀ ଭିତରେ ଆଉଟୁପାଉଟୁ ହେଲେ ।

ଏବେ ତାଙ୍କ ମୁଣ୍ଡଭିତରେ ଆଉ ଗୋଟିଏ କୋଣାର୍କ ରଚି ହୋଇଗଲା । ସେ ତ ଏବେଯାଏଁ ସୂର୍ଯ୍ୟ ମନ୍ଦିର ବେଢ଼ାରେ ସୂତ୍ରଧରଙ୍କୁ ତାଙ୍କ ସନ୍ଦେହ ମୋଚନ ପାଇଁ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଚାଲିଥିଲେ । ଚଳଚ୍ଚିତ୍ରର ଦୃଶ୍ୟ ପରିବର୍ତ୍ତନ ହୋଇ ପରି ଏବେ ହଠାତ୍ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହିତ ତାଙ୍କର ଦେଖାହେଲା । ତାଙ୍କୁ ପ୍ରଣତି ଜଣେଇ ଗଂଗମ ପଚାରିଲେ ମହାଶୟ ଆପଣଙ୍କ ଧର୍ମପଦ ଚରିତ୍ରଟି ବାସ୍ତବ ନା କାଳ୍ପନିକ ?

ଦାସେ ଆପଣେ ଖୁବ୍ ଭାବପ୍ରବଣ ହୋଇ ତାଙ୍କର ଘଞ୍ଚଶ୍ମଶ୍ରୁ ଭିତରେ ଆଙ୍ଗୁଳି ପହଁରେଇ ଆଣି ଗଂଗମଙ୍କୁ ପ୍ରତ୍ୟୟ ଦେବା ପାଇଁ ଚାହିଁଲେ । ଦୃଢ଼ତାର ସହିତ କହିଲେ ସେଭଳି ଗୋଟିଏ ଚରିତ୍ରସୃଷ୍ଟିର କାବ୍ୟିକ ଆବଶ୍ୟକତା ଥିଲା । ଆଳସ୍ୟ, ଅନୁଦ୍‌ବେଗ ଓ ଅନାଗ୍ରହର ଶୀଥିଳ ବନ୍ଧନୀ ଭିତରୁ ଗୋଟିଏ ଯୁବ ସମାଜକୁ ମୁକ୍ତ କରି ଦେଶର ଅଭ୍ୟୁଦୟରେ ସ୍ୱାର୍ଥତ୍ୟାଗ କରିବାପାଇଁ ବିମଳ ପରାକାଷ୍ଠାର ନଜିର

ହେଲା ଧର୍ମପଦ । ସିଏ ଯଦି କୋଣାର୍କ ସୂର୍ଯ୍ୟରଥର ଚୂଡ଼ା ଉପରୁ ଡେଇଁ ପ୍ରାଣ ବିସର୍ଜନ କରିନଥାନ୍ତା ତା'ହେଲେ ହୁଏତ ଇଂଲିଶ ସେନାଙ୍କ ବନ୍ଧୁକ ଗୁଳିରେ ବାଜି ରାଉତ ଭଳି ମୃତ୍ୟୁକୁ ଆଦରିଥାନ୍ତା । ମୃତ୍ୟୁର ଚିତ୍ର ନ ଆଙ୍କି ତ୍ୟାଗର ପରାକାଷ୍ଠା ଆଉ କେଉଁଭଳି ଗୋଟିଏ ସ୍ଥାଣୁ ଓ ସ୍ଥବିର ସମାଜ ପାଖରେ ପ୍ରକାଶ କରିହେବ ଏବଂ ଗୋଟିଏ ଜାତିକୁ ତ୍ୟାଗର ନିଃସ୍ୱାର୍ଥ ସଂଗୀତରେ ମନ୍ତ୍ରିତ କରିହେବ ? ଗୋଟିଏ ମାତ୍ର ଉପାୟ ସାମୂହିକ ସ୍ୱାର୍ଥ ପାଇଁ ବ୍ୟକ୍ତିର ଆତ୍ମତ୍ୟାଗ ।

ଦାସେ ଆପଣଙ୍କ ପ୍ରବୋଧନା ଗଂଗମଙ୍କ ବିଚଳିତ ମନକୁ ଶାନ୍ତ କରିପାରିଲାନି । ଗଂଗମ ପୁଣି ଆବେଗଭରା କଣ୍ଠରେ କହିଲେ, ବୁଝିହେଲା ସାମୂହିକ ସ୍ୱାର୍ଥପାଇଁ ବ୍ୟକ୍ତି ସ୍ୱାର୍ଥର ଜଳାଞ୍ଜଳି । ଆପଣ ଆପଣଙ୍କ କାବ୍ୟସୃଷ୍ଟିରେ ମାନବୀୟ ସଂପର୍କର ମହନୀୟ ଦିଗଟିକୁ ଉପେକ୍ଷା କରିଛନ୍ତି । ସେ ସଂପର୍କ ଭିତରେ ଗୌଣ ହେଇଯାଇଛି ବାତ୍ସଲ୍ୟର ବିମଳ ଉଦାରତା । ପିତା ପୁତ୍ର ଏବଂ ମାତା ପୁତ୍ରର ସଂପର୍କ କେବଳ ଜୈବିକ ସଂବେଦନା ନୁହେଁ, ତା'ରି ଭିତରେ ଲୁଚି ରହିଛି ବଂଶ ଓ ପରମ୍ପରାର ଆବେଗିକ ବାସ୍ତବତା । ଏହି ଆବେଗର ଏକ ସାମାଜିକ ଆଧାର ଅଛି । ଆପଣ ବର୍ଣ୍ଣିଥିବା ତ୍ୟାଗର ମହନୀୟତା ମୋର ମନେହୁଏ ଏକ ରାଜନୈତିକ ଆବଶ୍ୟକତା ବା କୁହାଯାଇପାରେ ଏକ ଦୁରଭିସନ୍ଧି । ପୁଣି ଗୋଟିଏ ଶିଳ୍ପୀକୁଳକୁ ସମଗ୍ର ଦେଶବାସୀଙ୍କ ଦାୟାଦ ବୋଲି କହି, ସେମାନଙ୍କୁ ବାଳୁତ ହତ୍ୟାପାଇଁ ଦାୟୀ କରିଦେବାରେ ଆପଣଙ୍କ ବିଚାର ବିଭ୍ରାଟ ଫୁଟି ଉଠୁଛି । ଗୋଟିଏ ପଟେ ବାରଶହ ପଥର କାରିଗରଙ୍କ ବାରବର୍ଷର ତପସ୍ୟା ଏବଂ ଅନ୍ୟପଟେ ଧର୍ମ ମହାପାତ୍ରଙ୍କ ସାମୟିକ କୃତିର ଏକ ପ୍ରଦର୍ଶନ । ବାରଶହ ବଢ଼େଇଙ୍କ ସାମଗ୍ରିକ ତ୍ୟାଗ, ନିଷ୍ଠା ଓ ପରାକାଷ୍ଠା ତୁଳନାରେ ଧର୍ମ ମହାପାତ୍ରଙ୍କ ଶିଳ୍ପ ଚାତୁରୀ ତୁଳନୀୟ ନୁହେଁ । ତାହା ପରମ୍ପରାର ବଳିଷ୍ଠ ଉଦାହରଣ ମାତ୍ର । ଆପଣଙ୍କ ଧର୍ମପଦ ମନ୍ଦିରରୁ ଡେଇଁ ଆତ୍ମହତ୍ୟା କରିଛି ଶୁଣିଲେ ଆଜିର ଯୁବସମାଜ ତ୍ୟାଗର ମହନୀୟତାକୁ ଫୁତ୍କାରରେ ଉଡେଇ ଦେବେ ।

ଦାସେ ଆପଣେ ଗଂଗମଙ୍କ ଅଭିଯୋଗର ଉତ୍ତର ଦେବା ପାଇଁ ଉଦ୍ୟତ ହେଲେ । ସେ କହିଲେ ଦେଶର ମଙ୍ଗଳ ପାଇଁ ମୋ ଚିନ୍ତନ କେବଳ ମୋ କାବ୍ୟ ସୃଷ୍ଟିଭିତରେ ସୀମିତ ନୁହେଁ, ତାହା ମୋ ସମଗ୍ର ଜୀବନରେ ପ୍ରତିଫଳିତ । ତମେ ହୁଏତ ଶୁଣିଥିବ ମୁଁ ବନ୍ୟାରେ ପ୍ରପୀଡ଼ିତ ଲୋକଙ୍କୁ ଚୂଡ଼ା ଓ ଚାଉଳ ବାଣ୍ଟିବା ପାଇଁ ରୋଗ ଶଯ୍ୟାରେ ପଡିଥିବା ମୋ ପୁଅକୁ ତା ନିଜ ଭାଗ୍ୟ ଉପରେ ଛାଡି ଦେଇ ପଳେଇ ଯାଇଥିଲି । ଫଳରେ ମୋ ପୁଅର ମୃତ୍ୟୁ ହେଇଯାଇଥିଲା । ଗୋଟିଏ ବୃହତ୍ତର ସ୍ୱାର୍ଥ ଆଗରେ ଛୋଟ ଛୋଟ ସ୍ୱାର୍ଥ ଓ ସଂପର୍କ ମଳିନ ପଡିଯାଏ । ଏଣୁ ଭଗବତ ପ୍ରାପ୍ତି ପାଇଁ ଘର, ପରିବାର ଓ ସମାଜକୁ ମଧ୍ୟ ପରିତ୍ୟାଗ କରିବାକୁ ପଡିଥାଏ । ଲାଗୁଛି ତମର ଚିନ୍ତାରେ ବିଭ୍ରାଟ ଘଟିଛି । ଏଡ଼େ ବିଶାଳ ଦେଉଳ ଗଢ଼ଣ ସରିଯିବ ଅଥଚ ମୁଣ୍ଡି ମାରିବା ପାଇଁ ସମସ୍ୟା ଉପୁଜିବ ? ଏହା ମନ୍ଦିର ନିର୍ମାଣ ସହିତ ସଂପର୍କିତ ଗୋଟିଏ ଲୋକକଥା ମାତ୍ର । ମୁଁ ଏହା ଉଦ୍ଭାବନ କରିନାହିଁ, ବରଂ ଗୋଟିଏ ଲୋକକାହାଣୀକୁ ପଥର ଖୋଦେଇଲା ଭଳି ଖୋଦେଇ ଖାଦେଇ କାବ୍ୟ ମୂର୍ତ୍ତିଟିଏ କରି ଓଡ଼ିଆ ସାହିତ୍ୟରେ ସ୍ଥାନ ଦେଇଛି । ସୃଜନ

ବେଦୀରେ କଳା ଓ ସାହିତ୍ୟର ଫରକ ବା କେଉଁଠି । ମନ୍ଦିର ନିର୍ମାଣର ଗରିମାକୁ ଏବଂ ନିର୍ମାଣକାଳେ ଉପୁଜିଥିବା ସହସ୍ର ବାଧାବିଘ୍ନକୁ ଉତ୍ତର ପୁରୁଷଙ୍କ ଆଗେ ଟେକି ଧରିବା ପାଇଁ ଧର୍ମପଦ ତଥ୍ୟକୁ କାହାଣୀଟିଏ କରିଦେଇ ଏ ଜାତି ସୃଜନର ସମ୍ମାନ କରିଛି ।

ଏତେ ବଡ଼ ଗୋଟିଏ ସ୍ୱର୍ଣ୍ଣକାତର ଘଟଣାକୁ ଦାସେ ଆପଣେ ଦର୍ଶନର ନିରସ ଆବରଣ ଭିତରେ ହଜେଇ ଦେବାକୁ ଚାହିଁଲେ । ଏଣୁ ଗଂଗମ ଆଗକୁ ପ୍ରସରିବା ପାଇଁ ଉଚିତ ମଣିଲେ ନାହିଁ, ତଥାପି ଗଂଗମଙ୍କ ମନରେ ଶାନ୍ତି ବିରାଜିଲାନି । ସେ ବିଭିନ୍ନ ଚିନ୍ତାର ଅଡୁଆ ଜାଲ ଭିତରେ ଆହୁରି ଆହୁରି ଛନ୍ଦି ହେଇଗଲେ । ଚିନ୍ତା ସମୁଦ୍ରର ଲହଡ଼ା ଭଳି ବାରମ୍ୱାର କୂଳରେ ମଥା ପିଟିବାକୁ ଲାଗିଲା । ସେ କୂଳ କିନାରା ନପାଇ ଆହୁରି ଆହୁରି ଅବ୍ୟବସ୍ଥିତ ହେଇଗଲେ । ଏମିତି ଗୋଟିଏ ସଂଦିଗ୍ଧ ମୁହୂର୍ତ୍ତରେ ସେ ହଠାତ୍ ପଣ୍ଡିତ ସଦାଶିବ ରଥଶର୍ମାଙ୍କୁ ଭେଟିଲେ ଓ କେତେକ ଐତିହାସିକ ସମସ୍ୟାର ସନ୍ଦେହ ମୋଚନ ପାଇଁ ତାଙ୍କଠାରେ ଫେରାଦ ହେଲେ ।

ଗଂଗମ ପ୍ରଥମରୁ ନିଜ ସଂପର୍କରେ ସାମାନ୍ୟ ଟିପ୍ପଣୀ ଦେବା ଉଚିତ ମନେକଲେ । ଯଦିଓ ପଣ୍ଡିତ ସଦାଶିବ ବଞ୍ଚିଥିବା ବେଳେ ତାଙ୍କ ସହିତ ଗଂଗମଙ୍କର ଅନେକଥର ସାକ୍ଷାତ ଆଲୋଚନା ହେଇଛି; ତଥାପି ଅନ୍ୟ ଏକ ଆଧିଭୌତିକ ସ୍ଥିତିରେ ପଣ୍ଡିତ ମହାଶୟଙ୍କ ମାନସିକ ସନ୍ତୁଳନକୁ ନେଇ ଗଂଗମଙ୍କର ସନ୍ଦେହ ଉପୁଜିବା ସ୍ୱାଭାବିକ । ଗଂଗମ ନିଜ ପରିଚୟ ଦେବାକୁ ଯାଇ କହିଲେ, ପଣ୍ଡିତ ମହାଶୟ ! ମୁଁ କଳିଙ୍ଗ ଦେଶର ଜଣେ ଆଧୁନିକ ଶିଳ୍ପୀ, ରୂପାନନ୍ଦ ଗଂଗମ । ମୁଁ ଏବର୍ଷ କଳିଙ୍ଗ ଶିଳ୍ପୀ ମହାସଂଘ ପକ୍ଷରୁ ଧର୍ମପଦ ପୁରସ୍କାର ପାଇଛି । ଆପଣଙ୍କ ସହାୟତାରେ ସଂପାଦିତ କୋଣାର୍କ ଗ୍ରନ୍ଥ ମୁଁ ଅଧ୍ୟୟନ କରିଛି । ଆପଣଙ୍କ ଦ୍ୱାରା ଆବିଷ୍କୃତ ଚାରୋଟି ତାଳପତ୍ର ପୋଥି ଯଥା ପଦ୍ମକେଶର ଦେଉଳର ସ୍ଥାପତ୍ୟ ବିବରଣ, ତ୍ରିକାଳ ମହାମାୟା ଅର୍ଚ୍ଚନା ବିଧି, ବୟଚକଡା ଓ ପଦ୍ମକେଶର ଦେଉଳ କର୍ମାଙ୍ଗୀର ନିର୍ଯ୍ୟାସ ମନ୍ଦିର ନିର୍ମାଣ ସହିତ ଏତେ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଯେ ଏହି ଚାରୋଟି ପୋଥିର ବିନା ସାହାଯ୍ୟରେ ସୂର୍ଯ୍ୟ ମନ୍ଦିର ସଂପର୍କରେ ସଠିକ ଭାବେ କୌଣସି ଅନୁଶୀଳନ ବୃଥା । ଆପଣଙ୍କ ଏ ଅବଦାନ ପାଇଁ ମୁଁ ନୁହେଁ ଆପଣ ଧର୍ମପଦ ପୁରସ୍କାରରେ ସମ୍ମାନିତ ହେବାକଥା । ଆପଣ ଜଣେ ସ୍ୱୀକୃତ ଚିତ୍ର ଶିଳ୍ପୀ ହେଇ ନଥିବାରୁ ଚୟନ ସମିତି ଆପଣଙ୍କ କଥା କେବେ ବିଚାରକୁ ନେଇନାହିଁ । ଯଦିଓ ପ୍ରଥମ ତାଳପତ୍ର ପୋଥିର ପୁଷ୍ପିକାର ତଥ୍ୟ ଉପରେ ନିର୍ଭର କରି ଆପଣ କହିଛନ୍ତି ଯେ ଖୋର୍ଦ୍ଧା ରାଜବଂଶରେ ସପ୍ତଦଶ ଶତାବ୍ଦୀ ପ୍ରାରମ୍ଭରେ ରାଜୁତି କରୁଥିବା ରାଜା ପୁରୁଷୋତ୍ତମ ଦେବଙ୍କ ନିର୍ଦ୍ଦେଶ ଅନୁସାରେ ଭୁବନେଶ୍ୱରର ଲିଙ୍ଗରାଜ, ପୁରୀର ଜଗନ୍ନାଥ ଏବଂ କୋଣାର୍କର ପଦ୍ମକେଶର ଦେଉଳର ବିବରଣ ଲେଖା ହେଇଥିଲା । ଜଣେ ଓଡ଼ିଆ ରାଜାଙ୍କ ଅନୁସନ୍ଧିତ୍ସାର ଫଳ କୋଣାର୍କ ମନ୍ଦିରର ବିବରଣ । କିନ୍ତୁ ଓଡ଼ିଆ ଗବେଷକମାନେ ଆପଣଙ୍କ ଗବେଷଣାରେ ସବୁବେଳେ ସନ୍ଦେହ ପୋଷଣ କରିଛନ୍ତି । ସେମାନେ କହନ୍ତି ଆପଣଙ୍କ ଦ୍ୱାରା ଆବିଷ୍କୃତ ପୋଥିଗୁଡିକ ଜାଲ୍ । ଏହାର କାରଣ କ'ଣ ହେଇପାରେ ? ଆପଣ ଦୟାବହି ମୋ ସନ୍ଦେହ ମୋଚନ କରନ୍ତୁ ।

ଦେଖ ଗଂଗମ ମୁଁ ଗବେଷକ ଭାବେ ପରିଚିତ ହେବା ଆଗରୁ ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ଜଣେ ସାମାନ୍ୟ ସେବକ ଭାବେ ପରିଚିତ ହେବାକୁ ଶ୍ରେୟ ମଣିବି । ମୁଁ ମହାମୂର୍ଖ, ସାମାନ୍ୟ, ଅକିଞ୍ଚନ । ବଳୀୟାର ଭୁଜଙ୍କ କୃପାରୁ ଯତ୍‌ସାମାନ୍ୟ ଆଲୋକର ସନ୍ଧାନ ପାଇଛି । ଏଣୁ ମୋ ଗବେଷଣାର ଶ୍ରେୟ ହେଲେ ଶ୍ରୀଜଗନ୍ନାଥ ମହାପ୍ରଭୁ । କୋଣାର୍କ ମନ୍ଦିର ଗବେଷଣାରେ ମୁଁ ଏଲିସ୍ ମାତାଙ୍କୁ ଯେତିକି ସାହାଯ୍ୟ କରିଛି ତାହା ଜଗନ୍ନାଥ ମହାପ୍ରଭୁଙ୍କ ଅପାର କରୁଣାରୁ ହିଁ ସମ୍ଭବ ହୋଇପାରିଛି । ଏଣୁ ମୋ ସଂପର୍କରେ ଅସୂୟା ପରବଶ ହୋଇ କିଏ କ'ଣ କହିଲା ବା କିଏ ମୋତେ ପୁରସ୍କାର ଦେଲା ବା ନଦେଲା ସେଥିନେଇ ମୁଁ ଆଦୌ ବିଚଳିତ ନୁହେଁ । ଏଭଳିକି ଭାରତ ସରକାରଙ୍କ ପଦ୍ମସମ୍ମାନ ପାଇ ମଧ୍ୟ ମୁଁ ଉତ୍‌ଫୁଲ୍ଲିତ ହୋଇନାହିଁ । ଯଦିଓ ଏହା ମୋ ପାଇଁ ଆକସ୍ମିକ ଘଟଣା ଥିଲା । ମୁଁ ଦୁଃଖ ସୁଖ, ସବୁକଥାକୁ ମହାପ୍ରଭୁଙ୍କ ଚରଣାରବିନ୍ଦରେ ସମର୍ପଣ କରେ । ମୋର ହୃଦ୍‌ବୋଧ ହେଉଛି ତମେ କୌଣସି ଗୋଟିଏ ଗୁରୁତର ସମସ୍ୟାନେଇ ଚିନ୍ତିତ । ହଁ ତା ପୂର୍ବରୁ ତମେ ପଚାରିଥିବା ପ୍ରଥମ ପ୍ରଶ୍ନର ଉତ୍ତର ଦେଇ ତମର ସନ୍ଦେହ ମୋଚନ କରିବା ଠିକ୍ ହେବ ।

ତେବେ ଶୁଣ, ଓଡ଼ିଆ ନିଶ୍ଚିତ ଭାବେ ଗୋଟିଏ ବୀର, ଦୁର୍ଦ୍ଧର୍ଷ, କଳାପ୍ରିୟ ଓ କବିପ୍ରାଣ ଜାତି । ସେ ଜାତିର ଐତିହ୍ୟ ଓ ପରମ୍ପରା ଅଛି । ଗଙ୍ଗା ଠାରୁ ଗୋଦାବରୀ ଯାଏଁ ବିସ୍ତୃତ ଏତେବଡ଼ କଳିଙ୍ଗ ସାମ୍ରାଜ୍ୟ ବିଖଣ୍ଡିତ ହୋଇ ଭୌଗୋଳିକ ସତ୍ତା ହରେଇ ଦେଲାପରେ ତାର କ୍ଷୟିଷ୍ଣୁ ପ୍ରଭାବ ଗୋଟିଏ ଏତେ ବଡ଼ ଜାତିର ଅସ୍ମିତାକୁ ନ୍ୟୂନ କରିଦେଲା । ଏତେବଡ଼ ଜାତିର ଗରିମା ହୀନମନ୍ୟତା ଭିତରେ ସଢ଼ିବାକୁ ଲାଗିଲା । ଷାଠିଏ ବର୍ଷ ତଳେ ଭାରତ ସ୍ୱାଧୀନ ହେଲା । ତାର ଦଶ ପନ୍ଦର ବର୍ଷ ଆଗରୁ ଓଡ଼ିଶା ତାର ଭୌଗୋଳିକ ସ୍ୱତନ୍ତତା ଏବଂ ଭାଷାଗତ ଐକ୍ୟ ଓ ସଂହତି ପାଇଲା । କିନ୍ତୁ ତା'ର ଅସ୍ମିତାର ପୁନଃ ପ୍ରତିଷ୍ଠା ପାଇଁ ଚେତନା ସ୍ତରରେ ସାମରିକ ପରମ୍ପରା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଗୌରବ, ନୃତ୍ୟ, ସଂଗୀତ ଓ ଚିତ୍ରକଳାର ଉତ୍କର୍ଷର ଅନୁରଣନ ଆବଶ୍ୟକ ହେଲା । ଆମର ଶ୍ରେଷ୍ଠ କବି ଜୟଦେବ ଓ ଗୀତଗୋବିନ୍ଦ କାବ୍ୟ ପରମ୍ପରାର ପୁନଃ ପ୍ରତିଷ୍ଠାର ଆବଶ୍ୟକ ହେଲା । କେତୋଟି ଗୁରୁତ୍ୱପୂର୍ଣ୍ଣ ତାଳପତ୍ର ପୋଥିର ଅନୁସନ୍ଧାନ କରି ଐତିହ୍ୟ ଓ ପରମ୍ପରା ସହିତ ଓଡ଼ିଆ ଜାତିର ପ୍ରାଚୀନ ଓ ଚିରାଚରିତ ସଂପର୍କକୁ ମୁଁ ଋଦ୍ଧିମନ୍ତ କରିଛି ମାତ୍ର । ଏଭଳି ପ୍ରଚେଷ୍ଟାରେ ଜାଲ୍ ପୋଥିର ସ୍ଥାନ କେଉଁଠି ରହିଲା । ଏଇ ସବୁ ପୋଥିମାନଙ୍କର ଅନୁଶୀଳନରେ ପାଶ୍ଚାତ୍ୟ ଧାରାକୁ ପରିହାର କରି ପ୍ରାଚ୍ୟ ଧାରାର ଗବେଷଣା ପ୍ରତି ସମ୍ମାନ ଦିଆଯାଇଛି । ମନ୍ଦିରର ଅନୁଶୀଳନ କେବଳ ଲମ୍ବ, ବେଧ, ଉଚ୍ଚର ମାପଚୂପ ମଧ୍ୟରେ ସୀମିତ ନୁହେଁ । ଏହା ବିଶ୍ୱପୁରୁଷ ଓ ମହାଜାଗତିକ ସଂପର୍କ ମଧ୍ୟରେ ଚଳମାନ ବିଦ୍ୟା । ମନ୍ଦିରର ଅନୁଶୀଳନ ପ୍ରଚଳିତ ଶିଳ୍ପଧାରା, ଧର୍ମଧାରା, ବିଶେଷତଃ ସୂର୍ଯ୍ୟତତ୍ତ୍ୱ ବା ସୂର୍ଯ୍ୟତତ୍ତ୍ୱର ବିସ୍ତାରିତ ରୀତିନୀତି ଉପରେ ପ୍ରତିଷ୍ଠିତ । ଏ ପୋଥିଗୁଡ଼ିକର ଅନ୍ତର୍ନିହିତ ଜ୍ଞାନ ଓଡ଼ିଆ ସାହିତ୍ୟ, ସ୍ଥାପତ୍ୟ, ଧର୍ମ, କଳା ଓ ସଂଗୀତ ତଥା ନୃତ୍ୟକୁ ସମଭାବରେ ଧନାଢ୍ୟ କରିଛି । ଆମ ଗବେଷଣାରେ ସନ୍ଦେହ ପୋଷଣ କରିବାର ମୁଖ୍ୟ କାରଣ ହେଲା ଓଡ଼ିଆଙ୍କ ପଠନ ଓ ମନନ

ବୈକଲ୍ୟ; ଏଭଳିକି ଉଦାରତାର ମଧ୍ୟ ଅଭାବ । ଓଡ଼ିଶାର ଏକଦେଶଦର୍ଶୀ ଗବେଷକମାନେ ଯେଉଁ ସତ୍ୟନିଷ୍ଠତାର ଆସ୍ଫାଳନ କରୁଥିଲେ, ତାହା ଆପେକ୍ଷିକ ମାତ୍ର । କୌଣସି ଗବେଷଣା ସ୍ୱୟଂ ସଂପୂର୍ଣ୍ଣ ନୁହେଁ । ଏହା ମାର୍ଗଦର୍ଶନ ମାତ୍ର । ମୁଁ ଏବଂ ମୋର ସହଯୋଗୀମାନେ ଏକ ନୂତନ, ଭିନ୍ନ ମାର୍ଗର ପଥିକ ଥିଲୁ । ଶିଳ୍ପ ଶବ୍ଦ ଅତ୍ୟନ୍ତ ବ୍ୟାପକ । ତମେ ଶୁଣି ଚମତ୍କୃତ ହେବ ଯେ ଏ ଦେଶର ରାଜାଙ୍କୁ ଶିଳ୍ପଜ୍ଞ କୁହାଯାଉଥିଲା କାରଣ ଏ ଦେଶର ରାଜାମାନେ ସଦା ସର୍ବଦା ଅଖଣ୍ଡ କୀର୍ତ୍ତି ନିର୍ମାଣରେ ନିଜକୁ ନିମଗ୍ନ ରଖୁଥିଲେ । ଆମ କୋଣାର୍କ ଗବେଷଣାର ଗୋଟିଏ ଅତ୍ୟନ୍ତ କୌତୂହଳ ଦିଗ ହେଲା ଧର୍ମ ମହାପାତ୍ର ଓ ଦେଉଳର ମୁଣ୍ଡି ମାରିବା ପ୍ରସଙ୍ଗର ସ୍ପଷ୍ଟିକରଣ । ଓଡ଼ିଆମାନେ ଭାବୁକ, କବିଗୁଣସଂପନ୍ନ ଓ କଥା ପ୍ରିୟ । ଏବଂ ବେଳେବେଳେ ଗୋଟିଏ ଉତ୍ତୁଙ୍ଗ ବ୍ୟକ୍ତି, ପ୍ରସିଦ୍ଧ କ୍ଷେତ୍ର ବା ଲୋକପ୍ରିୟ କୀର୍ତ୍ତିକୁ କେନ୍ଦ୍ରକରି କାହାଣୀମାନ ସ୍ୱାଭାବିକ ଭାବେ ଗଢ଼ି ଉଠେ । କଥା ଭିତରେ ଲଥା ଯୋଡି ହେଇଯାଏ । ସମୟ ଗଡିଚାଲେ ଓ ଲୋକଙ୍କ ତୁଣ୍ଡରେ କାହାଣୀର ସ୍ୱରୂପ ଓ ପରିପ୍ରେକ୍ଷୀ ବଦଳି ବଦଳି ଯାଉଥାଏ । ବେଳେବେଳେ ମଧ୍ୟ କାହାଣୀଟିଏ ନିଜ କକ୍ଷଚ୍ୟୁତ ହେଇ ଉକ୍ତର ମୂଳ ଉଦ୍ଦେଶ୍ୟ ଓ ସାର୍ଥକତାକୁ ବ୍ୟାହତ କରେ । ପୁଣି ଲୋକମାନସରେ 'ସାତତୁଣ୍ଡେ ଛେଳି କୁକୁର' ଭଳି କାହାଣୀ ବିଚିତ୍ର ପ୍ରଭାବ ପକେଇଥାଏ । ସତ୍ୟ କୁଆଡ଼େ ଲୁଚିଯାଏ ଏବଂ ଅବାନ୍ତର କଥାଟିଏ ଅବିକଳ ସତ ହେଇଯାଏ । ଇତିହାସ ଓ ବାସ୍ତବ ତଥ୍ୟ ଉପରେ ସମୟର ଧୂଳି ପରସ୍ତ ଘୋଡେଇ ହେଇଯାଏ । ଏଭଳି ଲୋକ କଥାଟି ହେଲା ଧର୍ମ ମହାପାତ୍ରଙ୍କ ମୁଣ୍ଡି ମାରିବା ଘଟଣା । ଆମେ ଆମ ଗବେଷଣାରେ ସେହି ଅଲୋଡ଼ା ଧୂଳିର ପରସ୍ତକୁ ସଫା କରିଦେଇ ଦେଖେଇ ଦେଲୁ ଯେ ଇତିହାସର ଧାରା ସଂପୂର୍ଣ୍ଣ ଭିନ୍ନ ।

କୋଣାର୍କର ସୂର୍ଯ୍ୟମନ୍ଦିର ଓଡ଼ିଆ ଜାତିର ସର୍ବଶ୍ରେଷ୍ଠ ଓ ସର୍ବଶେଷ ଉଲ୍ଲେଖନୀୟ କୃତି । ଏ ମନ୍ଦିରର ନିର୍ମାତା ରାଜା ନରସିଂହ ଦେବ ମାଘ ଶୁକ୍ଳ ସପ୍ତମୀ ରବିବାର ଦିନ ପଡୁଥିବାରୁ ସେ ଦିନ ମନ୍ଦିର ପ୍ରତିଷ୍ଠା କରିବା ପାଇଁ ଚାହିଁଲେ । ଏଭଳି ଶୁଭଦିନ ସାତବର୍ଷରେ ଥରେ ସମ୍ଭବ ହୁଏ । ସମୟ ପାଖେଇ ଆସୁଥାଏ । ଏଣୁ ସେ ମନ୍ଦିର କାମ ଶୀଘ୍ର ଶୀଘ୍ର ଆଗେଇ ନେବା ପାଇଁ ସୂତ୍ରଧରଙ୍କୁ ପ୍ରଭାବିତ କଲେ । ରାଜାଙ୍କ ଦ୍ୱାଦଶ ଅଙ୍କରେ ମାଘଶୁକ୍ଳ ଚତୁର୍ଦ୍ଦଶୀ ଦିନ ଶିଖରର ପୂର୍ବ କାନ୍ଥରେ ଝାମ୍ପ ସିଂହ ବସେଇବା ପାଇଁ ରାଜା ଜିଗର କଲେ । ଶିଖର ସଂପୂର୍ଣ୍ଣ ମୁଦ କରିବାକୁ ହେଲା । ସୂତ୍ରଧର ସବୁକାମ ଅତ୍ୟନ୍ତ ସତର୍କତାର ସହିତ ହିସାବ ନିକାଶ କରି ସଂପନ୍ନ କରନ୍ତି । ସେ ଭାବୁଥିଲେ ବୈଶାଖ କୃଷ୍ଣ ଅଷ୍ଟମୀ ତିଥିରେ ତାହା ସଂପୂର୍ଣ୍ଣ ହେବ । ରାଜା କିନ୍ତୁ ପକ୍ଷେ ଆଗରୁ ଏହା କରାଯାଉ ବୋଲି ଆଦେଶ ଦେଲେ । ସ୍ୱାଧୀନ ଚେତା ସୂତ୍ରଧର ମନ୍ଦିରର ସୁରକ୍ଷା ଦୃଷ୍ଟିରୁ ରାଜାଦେଶ ସ୍ୱୀକାର କରିବା ପାଇଁ ପ୍ରସ୍ତୁତ ନଥିଲେ । ରାଜା ଏକାମ୍ରକ୍ଷେତ୍ରରୁ ବିନ୍ଧାଣି ଅଣେଇ ଏହି କାର୍ଯ୍ୟଟି ସଂପାଦନ କରିଦେଲେ । ଏକାମ୍ରର ଏହି ବିନ୍ଧାଣି ରାଜାଙ୍କ ଦ୍ୱାରା ନିର୍ଦ୍ଦେଶିତ ହେଇ ନିର୍ଦ୍ଦିଷ୍ଟ ଦିନରେ ସିଂହ ବସାଣ କାମ ସାରିଦେଲେ । କିନ୍ତୁ ପରେ ଶିଖର ଉପରେ ବେକି ବସେଇଲାବେଳକୁ ମୋଡ ଜଣାପଡିଲା । ବେକିର ପଥରକୁ ଦି'ଥର ଖଞ୍ଜିବାକୁ ହେଲା ଏବଂ ଶେଷରେ ପଥର ଧରି ରଖିବାକୁ ବେକିରେ ପିତଳବଳା ପିନ୍ଧେଇବାକୁ ପଡିଲା ।

ଏଣୁ ଆମଳକ ଶିଳା ନ୍ୟାସ କରିସାରିଲା ପରେ ଖପୁରି ଓ କଳଶ ବସେଇଲାବେଳକୁ ନାନା ବିଭ୍ରାଟ ଦେଖାଦେଲା । ପଣ୍ଡିତ ସଦାଶିବ ଅନର୍ଗଳ ଭାବେ ନିଜ ଗବେଷଣାର ତଥ୍ୟ କହିଚାଲିଛନ୍ତି ଏବଂ ଗଂଗମ ନିଜର ଉତ୍ସୁକତାକୁ ସାଲିସ କରିବା ପାଇଁ ମନ ମୂନ ଦେଇ ପଣ୍ଡିତ ମହାଶୟଙ୍କ ବକ୍ତବ୍ୟ ଘେନିଯାଉଛନ୍ତି । କି ସିଦ୍ଧାନ୍ତରେ ଉପନୀତ ସେ ତଥ୍ୟ । ସୂତ୍ରଧର କଳଶ ସ୍ଥାପନା କାମରେ ନ ଆଗେଇବା ପାଇଁ ନିଷ୍ପତ୍ତି ନେଲେ । ଠିକ୍ ଏଭଳି ଏକ ମୁହୂର୍ତ୍ତରେ ସୂତ୍ରଧରଙ୍କ ପୁତ୍ର ଧର୍ମ ମହାପାତ୍ରଙ୍କ ଆବିର୍ଭାବ ଓ କଳଶ ବସେଇବାରେ ସହମତି ତଥା ତଦନୁଯାୟୀ କାର୍ଯ୍ୟସଂପନ୍ନ ସ୍ଥିତିକୁ ସମ୍ଭାଳି କରିଦେଲା ।

ସୂତ୍ରଧର ସଦାଶିବ ସାମନ୍ତରାୟଙ୍କ ଭଳି ଜଣେ ଦୂରଦୃଷ୍ଟି ସଂପନ୍ନ ବିଚକ୍ଷଣ ବିନ୍ଧାଣି ମନ୍ଦିର ଗଢ଼ଣର ଶେଷ ପର୍ଯ୍ୟାୟରେ କଳଶ ବସେଇବାରେ ଅସମର୍ଥ ହେଲେ ତା'ର କାରଣ ତାଙ୍କର ଅଜ୍ଞତା ବା ଦୁର୍ବଳତା ନୁହେଁ ବରଂ ମନ୍ଦିର କାମ ଶୀଘ୍ର ଶୀଘ୍ର ସାରିବାର ବ୍ୟସ୍ତତା ଭିତରେ ଘଟିଥିବା ବିଭିନ୍ନ ଅଖଣ୍ଡିଆ କାମ ପଥର ବସାଣରେ ସୂକ୍ଷ୍ମ ଭାରସାମ୍ୟକୁ ବ୍ୟାହତ କରିଥିଲା । ଆମ ପୋଥିରେ ଏକଥା ବି ଉଲ୍ଲେଖ ଅଛି ଯେ ପରବର୍ତ୍ତୀ ସମୟରେ ଶିଖରକୁ ଦୃଢ଼ୀକରଣ କରିବା ପାଇଁ ଚୂନର ପରସ୍ତ ଦେବାକୁ ପଡିଲା । ଏତେ କାରୁକାର୍ଯ୍ୟ ଖଚିତ ମନ୍ଦିରକୁ ସୂତ୍ରଧର ଏଭଳି କଦାକାର କରିବାର କାରଣ ହେଉଛି, ତରତରିଆ ଭାବେ ନିର୍ମାଣ କରାଯାଇଥିବା ମନ୍ଦିର ଶିଖରକୁ ମଜବୁତ କରିବାର ପ୍ରଚେଷ୍ଟା ।

ଏଣୁ ଧର୍ମ ମହାପାତ୍ର ମନ୍ଦିର ଚୂଡ଼ା ଉପରୁ ମହୋଦଧିକୁ ଡେଇଁପଡି ଆତ୍ମହତ୍ୟା କରିଥିବା ପ୍ରସଙ୍ଗ ସଂପୂର୍ଣ୍ଣ କପୋଳକଳ୍ପିତ । ଏହା ଓଡ଼ିଆ ଜାତିର ଏତେ ବଡ଼ ଶିଳ୍ପ ପରମ୍ପରାର ଅବମାନନା କରେ । ପୁଣି ଏଭଳି ଏକ ବିସମ୍ବାଦିତ ଜଘନ୍ୟ ଘଟଣାକୁ ଗୋଟିଏ ପୁରସ୍କାର ମାଧ୍ୟମରେ ଉଜ୍ଜୀବିତ କରି ରଖିବାର ପରମ୍ପରା ଅପଚେଷ୍ଟା ତ ନୁହେଁ, ଘୃଣ୍ୟ ମଧ୍ୟ ।

ପଣ୍ଡିତ ସଦାଶିବଙ୍କ ଶେଷ ବାକ୍ୟ ଗୁଡିକ ଗଂଗମଙ୍କ ମନରେ ଗଭୀର ରେଖାପାତ କଲା । ମନେହେଲା ତାଙ୍କ ସନ୍ଦେହ ମୋଚନ ହେଇସାରିଛି ।

ଅତିଥି ଭବନ ବାହାରେ କୋକିଶିଆଳଦଳ ସମସ୍ୱରରେ ଭୁକିବାକୁ ଲାଗିଲେ । ଗଂଗମଙ୍କ ସ୍ୱପ୍ନସ୍ଥିତି ଭାଙ୍ଗିଗଲା । ସିଏ ସାମାନ୍ୟ ପାଣି ଢ଼ୋକେ ପିଇ ନିଦରେ ଶୋଇଯିବାକୁ ଚେଷ୍ଟା କଲେ । ଭାବିଲେ ଦେହରୁ ଜାମାପଟା ଖୋଲିଦେଇ ଶୋଇଗଲେ ହୁଏତ ନିଦ ଶୀଘ୍ର ଆସିଯିବ । କିନ୍ତୁ ଆଖିବନ୍ଦ କରୁକରୁ ପୁଣି ଏକ ନୂଆ ପ୍ରକାର ଦ୍ୱନ୍ଦ୍ୱ ଭିତରେ ପଡିଗଲେ । ଦ୍ୱନ୍ଦ୍ୱର କାରଣ ହେଲା ସେ ଏଭଳି ଏକ ନିପଟ ମିଥ୍ୟା ଉପରେ ପ୍ରତିଷ୍ଠିତ, ପୁଣି ସମଗ୍ର ଶିଳ୍ପୀକୁଳର ନିଷ୍ଠା ଓ ପଟୁତାକୁ ଉପହସିତ କଲାଭଳି ଏକ ପୁରସ୍କାର ଗ୍ରହଣ କରିବେ କି ନାହିଁ । ପୁଣି କଳିଙ୍ଗ ଶିଳ୍ପୀ ମହାସଂଘର ଚୟନ ପଦ୍ଧତି ପୁରସ୍କାରକୁ ଗୋଟିଏ ରାଜନୈତିକ ପ୍ରେକ୍ଷାପଟ ଭିତରକୁ ନେଇ ଆସି ଏ ସମଗ୍ର ଘଟଣାଟିଏ ଯେଭଳି କୁତ୍ସିତ ଓ କଦର୍ଯ୍ୟ ରଙ୍ଗରେ ଚିତ୍ରଣ କରିସାରିଲାଣି, ସେହି ଅବସରରେ ଏ ପୁରସ୍କାର ଗ୍ରହଣ କରିବା ବିବେକାନୁମୋଦିତ ହେବନାହିଁ ।

ଗଂଗମ ସଂଧ୍ୟାବେଳ ଠାରୁ ଅସ୍ଥିର ଓ ବିଚଳିତ ଥିଲେ । ପୁରସ୍କାର ସମସ୍ୟା ତାଙ୍କର ସମଗ୍ର ସ୍ଥିତିକୁ ଏଭଳି ଭାବରେ ଆନ୍ଦୋଳିତ କରିଦେଇଥିଲା ଯେ, ସିଏ ତା'ର ଆଶୁ ସମାଧାନ ପାଇଁ ନିଦ୍ରା ଓ ବିଶ୍ରାମ ଚାହୁଁଥିଲେ ଏବଂ ତାହାହିଁ ତାଙ୍କୁ ପରିହାର କରି ଦୂରେଇ ଦୂରେଇ ଯାଉଥିଲା ।

ଅତିଥିଭବନରେ ସକାଳ ହେଲା, କୋଣାର୍କ ବେଢ଼ାରେ ସେ ଦିନର ପ୍ରଥମ ସୂର୍ଯ୍ୟୋଦୟ ସୁନେଲି କିରଣ ମେଲିଦେଲା । ସକାଳ ଚାହା ପରିବେଷଣ କରିବା ପାଇଁ ରୁମ୍‌ବଏ଼ ଗଂଗମଙ୍କ ପ୍ରକୋଷ୍ଠ ଖୋଲି ଦେଖିଲା ଗଂଗମ ଖଟରୁ ବୋଧହୁଏ ଅସାବଧାନତା ବଶତଃ ତଳେ କାର୍ପେଟ ଉପରେ ମୁହଁମାଡି ଅର୍ଦ୍ଧନଗ୍ନ ଅବସ୍ଥାରେ ଆତକାତ ହୋଇ ପଡିଛନ୍ତି ।

ଅତିଥି ଭବନର ଆଗ ସଡ଼କ ଦେଇ ଖବରକାଗଜ ହକର୍ ପିଲାଟି ଖୁବ୍ ଉଚ୍ଚ ସ୍ୱରରେ ଡ଼ାକି ଡ଼ାକି ଯାଉଥିଲା, ଶୁଣନ୍ତୁ ଆଜିର ତାଜା ଖବର, 'ଧର୍ମପଦ ପୁରସ୍କାରର ଅନିୟମିତତାକୁ ଆଧାର କରି ସରକାରଙ୍କ ତଦନ୍ତ କମିଶନ' ।

ଦିନନାଥ ପାଠୀଙ୍କୁ ଜଣେ ଚିତ୍ରକର, ଲେଖକ,
କଳା ଐତିହାସିକ, କ୍ୟୁରେଟର୍, କଳା ପ୍ରଶାସକ,
ସଂଗଠକ, ଶିକ୍ଷକ, ଭିଜୁଆଲାଇଜର୍ ଓ ଡିଜାଇନର୍ ବା
ସେମିତି ଆଉ କିଛି ମଧ୍ୟ କୁହାଯାଇପାରେ । ସେ କିନ୍ତୁ
ଧର୍ମପଦର ପ୍ରେତ ନୁହନ୍ତି ବା ଯେଉଁ ଶିଳ୍ପୀଗୋଷ୍ଠୀ
ଧର୍ମପଦକୁ କୋଣାର୍କ ମନ୍ଦିର ଉପରୁ ଡେଇଁ ଆତ୍ମହତ୍ୟା
କରିବା ପାଇଁ ବାଧ୍ୟ କରିଛନ୍ତି ବୋଲି କିମ୍ବଦନ୍ତୀ କହେ,
ସେହି ଶିଳ୍ପୀଗୋଷ୍ଠୀର ସେ ପ୍ରତିନିଧି ନୁହନ୍ତି ।

